# କଥା ଓ ଗାଥା

## ପ୍ରଥମ ଭାଗ

ସଂପାଦକ

ରାଧାମୋହନ ଗଡ଼ନାୟକ

ପ୍ରକାଶକ—

ପ୍ରବାସୀ ପ୍ରକାଶନୀ

ଉପନ୍ୟାସ ମହଲ

ବଣୀହାଟ

କଟକ–୧.

ମୁଦ୍ରାକର—

ଲକ୍ଷ୍ମୀଧର ନାୟକ

ମହାଲକ୍ଷ୍ମୀ ପ୍ରେସ,

କଟକ ୧

ପ୍ରଥମ ମୁଦ୍ରଣ

୧୯୫୧

ଏକଟଙ୍କା

# କୃତଜ୍ଞତା

"କଥା ଓ ଗାଥା"ର ସମ୍ପାଦନାରେ ଯେଉଁ ସହୃଦୟ କବିମାନେ ନିଜ ନିଜ କବିତାର ପ୍ରକାଶ ପାଇଁ ଅନୁମତି ପ୍ରଦାନ କରିଛନ୍ତି ମୁଁ ସେମାନଙ୍କୁ ମୋର ହୃଦୟର କୃତଜ୍ଞତା ଜ୍ଞାପନ କରୁଅଛି ।

ସମ୍ପାଦକ

# ସୂଚୀ

# ପଦ୍ମାବତୀ-ପରିଣୟ

ନନ୍ଦକିଶୋର ବଳ

୧

କାଞ୍ଚି-ନୃପତି    ଉତ୍କଳ-ନୃପେ
କରିଅଛି ଅବମାନନା,
ସମର-ସଜ୍ଜା    ଲଗିଛି ଉତ୍କଳେ
ବାଜୁଛି ଯୁଦ୍ଧ-ବାଜଣା ।

ନଗର ନଗର    ବୁଲିଣ ଡଗର
କରଇ ସମର ଘୋଷଣା,
ଦୁର୍ଗେ ଦୁର୍ଗେ    ଅର୍ପଇ ଦୂତ
ସାମନ୍ତ ଗଣଙ୍କୁ ଅର୍ଚ୍ଚନା

ପଲ୍ଲୀ ପଲ୍ଲୀ ବୁଲଣ ପ୍ରଧାନ
ହକାରେ ପାଇକ-ବାହିନୀ
ଡମ୍ ଡମ୍ ବାଜେ ଘୋଷଣା-ଡିଣ୍ଡିମ
ରକ୍ତେ ନଚାଇ ଧମନୀ ।

କାଞ୍ଚି-ନୃପତି ଉତ୍କଳ-ନୃପେ
କରିଅଛନ୍ତି ଅବମାନନା
ସମର-ସଜ୍ଜା ଲାଗିଛନ୍ତି ଉତ୍କଳେ
ବାଜୁଛନ୍ତି ସଂଗ୍ରାମ-ବାଜଣା ।

୨

ଖଣ୍ଡା ସେନାଣ ଖଣ୍ଡାୟତ ଗଣ
ଉନ୍ମତ୍ତ ବୀର ଗୌରବେ;
ଚଣ୍ଡୀ ପୂଜଣ ବୀର-ବାମାଗଣ
ହୁଳ ହୁଳି ଦେଲେ ସରବେ ।

ଅସ୍ତ୍ର ଝଣ ଝଣ ହସ୍ତି-ବୃଂହଣ
ଅଶ୍ୱର ହ୍ରେଷା ଚହଲ,
ଢାଲ ତରୁଆଲ ନରମୁଣ୍ଡ ମାଳ
କେପି ଉଠେ ଧୂଳି ପଟଳ ।

ଛନ୍ଦ ଭରସ କେପି ଧ୍ୱଜାବଳୀ
ଫର୍ଫର ଉଡ଼େ ପବନେ,
"ଜୟ ଜଗନ୍ନାଥ" ଗୁରୁ ଗର୍ଜନ
ତ୍ରାସଇ ସିନ୍ଧୁଗର୍ଜନେ

କାଞ୍ଚି-ନୃପତି ଉତ୍କଳ-ନୃପେ
କରିଅଛି ଅବମାନନା
କରୁଛି ବାହିନୀ ଯୁଦ୍ଧଯାତ୍ରା
ବାଜୁଛି ସଂଗ୍ରାମ-ବାଜଣା ।

୩

କାଞ୍ଚି-ନୃପତି ଉତ୍କଳ-ନୃପେ
କରିଅଛି ଅବମାନନା,
କରୁଛି ବାହିନୀ ଯୁଦ୍ଧଯାତ୍ରା
ଶୁଭୁଛି ସଂଗ୍ରାମ-ବାଜଣା ।

ସଂଭଜି ରୁଣ୍ଡ କମ୍ପେ ବ୍ରହ୍ମାଣ୍ଡ
ମହାଦର୍ପେ ଯାନ୍ତି ବାହାରି,
ଚତୁରଙ୍ଗ ସେନା ସହ ଉତ୍କଳେଶ
"ଜୟ ଜଗନ୍ନାଥ" ଉଚ୍ଚାରି ।

ଭକ୍ତ-ବତ୍ସଳ ପ୍ରଭୁ ଜଗନ୍ନାଥ
ଲୁଚି ଲୁଚି ସଙ୍ଗେ ଚଳିଲେ,
ପ୍ରଥମେ ହାରିଲେ ପୁରୁଷୋତ୍ତମ
ଭକ୍ତକୁ ପ୍ରଭୁ ଛଳିଲେ ।

କାଞ୍ଚି-ନୃପତି ଉତ୍କଳ-ନୃପେ
କରିଥିଲା ଅବମାନନା
ସମରେ ହରାଇ ଲଜ୍ଜା ସେ ଦେଲା
ନୀରବ ସମର-ବାଜଣା ।

"ହେ ପୁରୁଷୋତ୍ତମ ସାହା ହୁଅ ମମ
ଭାତରେ କରେ ମୁଁ ମିନତି,
ମାରେଁ ଅବା ମରେଁ ନାହିଁ ଅନ୍ୟ ରାହା
ମୁଁ ପୁରୁଷୋତ୍ତମ ନୃପତି ।"

ଇଷ୍ଟ ପ୍ରସାଦ ଶିଙ୍ଘି ବଜାଦେ
ହୁଁକାର ଛିନ୍ନ ଗର୍ଜ୍ଜନେ,
ଭାଙ୍ଗି-ଫଟକେ ଉହଲ-ଥାଟ
ପେଷିଲେ ଶମନ-ସଦନେ ।

କାଞ୍ଚି-ହରଣୀ ହରିଣୀ-ନୟନା
ପଦ୍ମାବତୀ ରାଜକୁମାରୀ,
ବନ୍ଦୀ କର ଉତ୍କଳ-କେଶରୀ
କହନ୍ତି ମନ୍ତ୍ରୀଙ୍କୁ ହକାର,

"ଚଣ୍ଡାଳ କରେ ରଣ୍ଡୀ ଅରସ
ମେଣ୍ଟ ମୋ ଅବମାନନା
ଯୋଗ୍ୟ ଯୋଗ୍ୟା ଯୋଜନା କରାଅ
ଦୂରେ ଯାଉ ଯୁଦ୍ଧ-ଯାତନା ।"

"ଯଥା ଆଜ୍ଞା ଶ୍ରୀମନ୍," ବୋଲିଲେ ମନ୍ତ୍ରୀ
ଚିନ୍ତା-ଭ୍ରୂକୁଟି ଲୋଚନେ
ସମ୍ଭ୍ରମଭରେ ସ୍ୱକ-ସ୍କନ୍ଧାବାରେ
ରଖିଲେ ତେମାଙ୍କୁ ନିର୍ଜନେ ।

୨

କାଞ୍ଚି-ନୃପତି ଉତ୍କଳ-ନୃପେ
କରିଥିଲା ଅପମାନନା
ଯୁଦ୍ଧ-ବିଜୟୀ ଉତ୍କଳ-ସାଇଁ,
ପୂରିଅଛି ମନସ୍କାମନା ।

ସ୍ୱର୍ଣ୍ଣ ମାର୍ଜନୀ ହସ୍ତେ ନୃପତି
କରୁଥିଲେ ଛେରା ପହଁରା,
ପଦ୍ମାବତୀଙ୍କୁ ମନ୍ତ୍ରୀ-ଆଦେଶେ
ଆଣି ଉଭା କଲା ଡଗର ।

ମନ୍ତ୍ରୀ କହନ୍ତି, ଗଜପତି ଆଜ୍ଞା
ଟଳିନାହିଁ କେବେ ଭୁବନେ
ହସ୍ତୀର ଦନ୍ତ ଉଲଟି ହସ୍ତୀ—
ମୁଖେ ପଶି ନାହିଁ ଯେସନେ ।

ନୃପତି-ନିଦେଶେ ଚଣ୍ଡାଳ-ବେଶୀ
ନୃପେ କଲ କ୍ଷମା ଅର୍ପଣ,
"ଜୟ ଜଗନ୍ନାଥ" "ଧନ୍ୟ ହେ ମନ୍ତ୍ରୀ"
ବନ୍ଦ୍ୟାନନ୍ଦେ ଶୁଭେ ବଚନ ।

ଚଣ୍ଡାଳ କରେ ଚଣ୍ଡୀ ଅର୍ପିତା
ମେଣ୍ଟିଲା ଅବମାନନା,
ଯୋଗ୍ୟ ଯୋଗ୍ୟା ହେଲେ ସଂଯୁକ୍ତା
ଦୂରେ ଗଲା ଯୁଦ୍ଧ-ଯାତନା ।

---

# କାଳିଜାଇ

ଗୋଦାବରୀଶ ମିଶ୍ର

ଭଲ କର ନାଅ ବାହାରେ ନାଉରି,
ଝିଅକୁ ମାଡ଼ୁଛି ଜର,
ଘଡ଼େ ଗଡ଼ ଲୋକ ଗୃହଁ ବସିଥିବେ
ଝିଅ ଯିବ ଶାଶୁଘର ।

ଭଲ କର ନାଅ ବୋହୂଟି ନାଉରି
ଡରେଇ କରୁଛି ଠିଆ
ମାମୁଁ ଭଣଜାର କୁଣରୁ ଆସେ ଲୋ
ବୋହୂ ଫୁଲ୍ଲ ଫୁଲ୍ଲ ବାଆ ।

ଦନ ଦଣ୍ଡଗଡ଼ ହେଲାଣିଟି ଅସ୍ତ
ଖର ମାରେ ଗ୍ରୁଇଁ ଗ୍ରୁଇଁ,
ପାଞ୍ଚ କୋଶ ବାଟ ଯିବାକୁ ଅଛି ଲୋ
ବେଳ ତ ପାଇବ ନାହିଁ ।"

ନାଉରୀ ବାପୁଡ଼ା କାତ ମାରୁଅଛୁ
ଉଦାସେ ଗାଉଛି ଗୀତ,
ନାଆ ଉଡ଼ିଯାଏ ପବନ ପ୍ରାଏ ଲୋ
ଜଣା ନ ପଡ଼ଇ ବାଟ ।

ମାଆ ଭଉଣୀଙ୍କି ସାଥି ସଂଗାତଙ୍କୁ
ଝିଅ ଯେ ଆସିଛି ଛାଡ଼ି
ନାଆ ରେ ବସି ସେ ତାଙ୍କର କଥା ଲୋ
ହୁଏ ନିରନ୍ତରେ ବାଢ଼ି ।

ମାଆ ଭଉଣୀଏ ସାଥି ସଂଗାତେ ସେ
ରହିଲେ ଦୂରସ୍ଥେ କାହିଁ ?
ପରତେ ନୋହୁଛି ଅଉ କ ସତେ ଲୋ
ଦନେ ସେ ଦେଖିବ ଯାଇ ।

ନାଆ ଚାଲି ଅଛି ପବନ ସମାନେ
ମୁହୂର୍ତ୍ତେ ନ ହୁଏ ଥୟ,
ଚାହାଁ ଯେତେ ତାର ବଣ ପାହାଡ଼ ଲୋ
ଦେଖନ୍ତା ଟିକଏ ଝିଅ ।

ଘଣ୍ଟଶିଳା ଶିଖେ    ଗୁହିଁ ସେ କହନ୍ତା
ଦିଅ ରେ ମେଲାଣି ମତେ,
ଭେଟ ଅଉ ଦିନେ    ନୋହିବ ଜୀବନେ
ଯାଉଛି ଘୋର ବନସ୍ତେ ।

ଶାଳିଆ ନଈ ତା    ନିତିଦିନ ସାଥି
ସୁଖେ ବୁଲୁଥାଏ କୂଳେ
ବେଳେ ସୁଏ ତାର    ସ୍ନାହାନ ସାର ଲୋ
ଝୁପି ଲେଉଟଇ ଘରେ ।

କାଳି ଅଗାରୁ ସେ    ଗୁଲି ଯେ ଅଇଲା
ଦେଖି ତ ନାହିଁଛି ତାକୁ,
ଭରି ଖ୍ୟାତ ନଈ    ନାଅଁଟି ତାର ଲୋ
ଉନକୋଞ୍ଜି କୋଶେ ତାକୁ ।

ମାଆ ଭଗବତୀ    ପୀଠ କୋଳେ ତାର
"ଜଗନ୍ ତାରଣୀ" ନାଅଁ,
ତାକୁ କହୁଥାନ୍ତା    ନୋହିଲା ଅଉ ଲୋ
ସାହା ମୋ ଥିବୁଟି ମାଆ ।"

ନାଆ ଅସି ହେଲା    ଦଣ୍ଡିକ ଭିତରେ
ଚଢେଇ ଦ୍ୱାଗାର ତଳେ ,
ଘଣ୍ଟଶିଳା ଅଉ    ନ ଦିଶେ, ଲହଣ ଲେ
ରହିଲା ଶାଳିଅ ଦୂରେ ।

ଗୃହୁଁ ଗୃହୁଁ ଆସି    ପହୁଞ୍ଚିଲା ନାଆ
ମଝି ଚିଲିକାରେ ପୁଣି,
ଝିଅର ଆଖିରୁ    ଝରଇ ଲୁହ ଲୋ
ଚନ୍ଦ୍ର ପିନ୍ଧା ଛୁଞ୍ଚ କାନ ।

ପାରିକୁଦ ବୋଲି    ରାଇଜ ପୁଣି ସେ
ଚିଲିକା ମଝିରେ କାହିଁ,
କେମନ୍ତ ମୁହିଁଲି    ଝିଅକୁ ବାପା ହେ
ଏତେ ଦୂରେ ଦେବା ପାଇଁ ।

ବର ବୋଲି ଯାର    ଧରାଇଲ ହାତ
କି ତାର ଦେଖିଲ ଶିରୀ ?
ରୂପ ବିଦ୍ୟା ଅଛି    ବିଭବ ବାପା ହେ
ଚନ୍ଦ୍ରେ ଚନ୍ଦ୍ରିଙ୍କୁ ବଳି ।

ମହୀ ମଣ୍ଡଳରେ    ନାହିଁତ ନ ଥିବ
ମୋ ଭଳି ନିଠୁରିଆ ଜନ,
ଏ ମହା ସମୁଦ୍ର    ମଝିରେ ବାପା ହେ
କେମନ୍ତେ ବଂଚିବି ଧନ ?

ଏତେ ସ୍ୱାଭିମାନ କହିବାକୁ ଯେତେବ
ମନରେ ଥିଲା ବିଗୁର
ଏନୁଡିଶାଳେଟି କପାଇଁ ବାପା ହେ
ଭଣ୍ଡି ଶପି ନ ମାରିଲ ?

ହିଅକୁ ନିର୍ଣ୍ଣିନ୍ତେ ଦେଇଛ ପଠାଇ
ବନସ୍ଥକୁ ଜାଣୁ ଜାଣୁ
କପାଳ ଅଦର ଯାଉନ୍ତୁ ବୋଇ ଲୋ
ପାଶୋରି ନ ଦେବୁ ମନୁ ।”

ନାଆ ଉଡ଼ିଯାଏ ପବନ ସମାନେ
ନାହିଁ କ୍ଷଣେ ହୁଏ ଥୟ
ହିଅ ବସିଅଛି ଭୁନଟି ହୋଇ ଲୋ
ନେଇ ବହିଯାଏ ଲୁହ ।

ନାଆ ଗୁଲିଅଛି ପବନ ସମାନେ
ନ ମାନେ ପାଣି ପଥର
ଲୁଣ ହୁଅ ଜାଇ, ନ କାନ୍ଦ ଅଉ ଲୋ
ଏଇ ଯେ ଦିଶୁଛି ଗଡ଼ ।

ଏତେ ବୋଲି ବାପା ହିଅର ଅଖିରୁ
ଦେଲେ ଲୁହଧାର ପୋଛି
ଏତେ ପରେ ତାକୁ ବୁଝାନ୍ତି ବସି ଲୋ
ଜାଇ ବୁଝୁ ନାହିଁ କିଛି ।

ଭଲ କର ନାଅ ବାହା ରେ ନାଉରି
ଝିଅକୁ ମାଡୁଛି ଡର
ନୂଆ କର ଲାଇ ନାଅରେ ବସୁଛି
ଯିବ ବୋଲି ଶାଶୁଘର ।

ଭଲ କର ନାଅ ବୋହୁଛି ନାଉରୀ
ଭଡ଼ ମାରୁଅଛି କାଉ
ସୁଲୁ ସୁଲୁ ବାଅ ବୋହି ଅସୁଛି ଲୋ
ଜଣା ନ ପଡ଼ଇ ବାଟ ।

ନାଅ ଭିଡ଼ି ଆସି ଦଣ୍ଡକ ଭିତରେ
ଗଣ୍ଠରେ ପଡ଼ିଲା ଯାଇ
ଥିର ହୋଇ ହେଲା ନାଉରୀ ଠିଆ ଲୋ
କାଉ ଅଉ ପାଉ ନାହିଁ,

ଝଲେର ଶିଖରୁ ଚଲା ମେଘ ଖଣ୍ଡେ
ଉଠେଇ ଅସିଲା କାହିଁ ।
ଲୁଚିଗଲେ ତହିଁ ସୂର୍ଯ୍ୟ ଦେବତା ହୋ
ଖବର ନ ପଡ଼ଇ ଅଉ ।

ମାଡ଼ି ଅସୁଅଛି ଧାଡକାରେ ମେଘ
ଜଟିଅ ନାସିକ ଧର
ବରଷା ବତାସି ଗରଜୁ ଅଛି ଲୋ
ଦନ ଦଶେ ରାତ ପର ।

ନାଅ ପଡ଼ି ଅଛି ମଝି ଗଣ୍ଡେ ଅଟି
ବୁଡ଼ ଯିବ ହାତୀ ଛଡ଼,
ଟଳମଳ ହୋଇ ଟଳୁଛି ନାଅ ଲୋ
ନାଉରୀର ବଡ଼ ଭୀତ ।

ଭଲ୍ କର ବେଗେ ବୁଝା ରେ ନାଉରୀ
ନାଅ ହେଲା ଟଳମଳ
ବରଷା ବତାସି ଗରଜି ଅସୁଛି
ହିଅକୁ ମାଡୁଛି ଡର ।"

ବରଷା ବତାସି ଗରଜି ଆସିଲା!
ନାଅ ନୁହେଁ ଥୟ କର
ଏକା ପବନକେ ପାହାଡେ ଯାଇ ଲେ
ପିଠି ହୋଇଗଲା ଚୁର ।

ମେଘ ଗୁଳିଗଲ ମେଘର ବାଟେ ସେ
ବତାସି ହୋଇଲା ଥିର,
ପଡ଼ିଗଲା ଖସି ନିର୍ମଳ ହୋଇ ଲୋ
ପାଣି ହୁଏ କଳ କଳ ।

ବାପା ପଗ୍ଚରନ୍ତି ଖୋଜି ନାଉଚ୍ଚି ରେ
"ଝିଅ ମୋର ଗଲା କାହିଁ?
ଲୁହ ଅଖି ଠିଅ ନାଉଚ୍ଚି ନିଜେ ଲୋ
ଭୁଣ୍ତ ତା ଫିଟଇ ନାହିଁ ।

ଚିଲ୍କା ପାଣିରେ ଦୋଲୁଛି ଲହରି
ବୋହୁଛି ଶୀତଳ ବାଆ
ସୋର ସୋର ଶବ୍ଦ ଚଲି ଯାଉଛି ଲୋ
ଖେଳୁଛି ସହସ୍ର ନାଅ ।

ପାହାଡ଼ ଚଢ଼େଇ ଢୁଣ୍ଢୁ ଅଛି ସବୁ
ମନେ କି ଅଛି ତା ଧୋକା ?
ପାଣିତଳେ ଘୁଇ ବୁଲି ଯାଉଛି ଲୋ,
କାଇଁକି ନାହିଁଛି ଏକା ।

ବାପା ଫେରି ଅସି ବୋଉଙ୍କ ଆଗରେ
କିଛି ନ ପାରନ୍ତି କହି,
ଅର ଦିନ ପୁଣି ନାଉଚ୍ଚି ଗଲା ଲୋ
ନାହା ସେଇ ବାଟେ ବାହି ।

କେତେଶ' ବରଷ ହେଲାଣି ସେଦିନୁ
ଗଣି କି କହିବ କିଏ ?
ନାହିଁ କିଛି ଅଉ ସେକାଳ କଥା ଲୋ
କାଇ ରହିଅଛି କିଏ ।

ବାଲୁଗାଆଁ କୂଳ        ନାଆ ଗଲା ବେଳେ
ପାରିକୁଦ ଗଣ୍ଡଠାକୁ,
ପାହାଡ଼ର ପାଖେ        ମଣିଷ ତୁଣ୍ଡ ଲୋ
ନ ଶୁଣାଯାଏ କାହାକୁ ?

ବରଷା ବଢାସି        ଚିଲିକାରେ ଅଛ
ହୁଏ ନାହିଁ ତେଢେ ଭଳି,
ଆପଦେ ବିପଦେ        ଜଣା ପଡ଼ଇ ଲୋ
ସାହା କିଏ ଥିଲା ପର ।

ନାଉରୀ କେଉଁଠି        ପାହାଡ଼ ବାଟେ ସେ
ନାଆ ନେଇ ଗଲାବେଳେ,
କାମେ ଅପଣାର        ଶୁଭ ମନାସି ଲୋ
ଜୁହାର କରଇ ଥରେ ।

ତୋଳିଲେ ପାହାଡ        ଶିଖେ କାଟିଲ ଲୋକେ
ସୁନ୍ଦର ଦେଉଳଟିଏ
ସେ ଦେଉଳେ ଅବା        ରହୁବ ଯାଇ ଲୋ
ଶିଳୁକା ମନ୍ଦିରେ କିଏ ?

ସୂର୍ଯ୍ୟ ବୁଡି ଗଲେ,        ନିଶବଦ ଯେବେ
ହୁଏ ସବୁ ସଂଜ ବେଳେ,
ଚକା ହୋଇ ଜାଇ,        ଲୋକେ କହନ୍ତି ଲୋ,
ବୁଲ୍ଲ ଯେ ଥାଏ ପାହାଡେ ।

ନେତ୍ରୁ ବହୁ ଥାଏ ଲୁହ ଦୁଇ ଧାର
ଶୁଖି ଯାଇ ଥାଏ ମୁହଁ;
ହେଲେ, ଠାବ ହାତ, କାନ୍ଦି, ବାହାକୁ ଲୋ
ନବଣ୍ଡୀର ଘଟେ ଥସ୍ତ ।

ଭାଲିଜାଇ ବଡ ପ୍ରତ୍ୟକ୍ଷ ଦେବତା
କୋଟି କୋଟି ଦଣ୍ଡବତ ।
ପାହାଡର ନାଆଁ ସଭିଙ୍କେ ଖ୍ୟାତ ଲୋ
"ଭାଲିଜାଇ ପରବତ ।"

# ହରିଜନ

ଦୁଇ ଦିନ ହେଲା ଜୁଟି ନାହିଁ ଦାନା
ପତାଉଛି କେତେ ହାତ,
ମିଳିଅଛି ମୁହଁ-ମୋଡା ନାକ-ଟେକା
ମାତର ମିଳୁନି ଭାତ ।

ବିଶାଳ ନଗରୀ ପାଟଳିପୁର
ଲକ୍ଷୁଁ ଅଧିକ ଜନ,
ମୁଠାଏ ଅନ୍ନ ଖାଣି କଉଁଠି
ଲଗେ ସବୁ ଅଭାଜନ ।

କାହା ଭରସାରେ ଚାଲିବ ସେ ବନ୍ଧୁ ?
ଯୋଡାଏ ଯୋଡ଼ାଏ ପିଲା,
ଦଶଟି ବରଷ ଖୁଆଇ ପିଆଇ
ଘରଛି ଯା’ ପାଖେ ଥିଲା ।

ଅଗତ ପଉଷେ ବୃହସ୍ପ ତା’ର
ମୁଦିଲା ଯୁଗଳ ଅଖି,
ଶୋଥ କାମଳକୁ ଚିକିତ୍ସା ଯେତେ
ରଖିନା ସେ କିଛି ବାକି ।

ଚାଲିଗଲା ସୁଖେ ମାଇଟିଠାଏ ସେ
ଗୁରୁ ଭାର ଲଦି ଶିରେ,
ଅମଡ଼ା ପଥେ ସେ ମାଡ଼ିଚାଲେ ଏକା
ନୟନ-ଅଶ୍ରୁ-ନୀରେ ।

ତନିଠା ପରାଣ ଚାଲନ୍ତ୍ର ଠେଲି
କୁକ୍‌କୁର ତହୁଁ ହୀନ,
‘ସୃଷ୍ଟିରେ କିବା ପ୍ରୟୋଜନ କାର
କହିବ କେ କେଉଁଦିନ ?

ବୈଶାଖ ମାସ ଶୂନ୍ୟ ସରଣୀ
ଦୁଇ ପହରଅ ଖର,
ଚୌଦିଗୁ ନିଆଁ ବରଷଇ, କୁଆ
କୋଇଲି ସ୍ୱପ୍ନ ପର ?

ଏକାଳେ କାହାକୁ କହିବ ଦୁଃଖ ?
ପ୍ରାଣୁଁ ଉଠେ ଖାଲି କୋହ,
ଦେଖିଲା ପାଖେ ନିଜର ସୋଦରେ
ଉଛୁର ସମାଦରୋହ ।

ଗତ ରଜନୀରେ ସରନ୍ଧ୍ର ବିବାହ
ଚିକା ପଡ଼ଶେ ସାଜସଜା,
ସବୁ ନଥିବ ତ ସାତ ଦିନ ଯାଏ
ଚର୍ବ୍ୟ ଚୋଷ୍ୟ ମଜା ।

ଡାକିଲା ବିକଳେ "ମାଅ ଠାକୁରାଣୀ—
ଶୁଣ ଏ ଗରିବ ଡାକ,
ବଳିଥିବ ତୁମ ଭୋଜନ ପାତ୍ର,
ଦେବେ ତ ଅନ୍ନ ଶାକ ।

ଦିଅ ଅଟିଆରେ ଯା ଥିବ ଭାଗ୍ୟେ
ଅନ୍ନ ତୋରାଣି ପାଣି,
ଉଡ଼ଇ ହଂସ ଦେନ ମୋ ଦଇନ—
ମଲ୍ଲିଁକୁ ଜନନୀ ପ୍ରାଣୀ ।"

ଅଇଁଠା ପତ୍ର ଗୁନ୍ଥିଥିଲ ଅବା
ଅଦୂରେ ଶୀର୍ଣ୍ଣ ଶ୍ୱାନ,
ଅନାହୂତ ଜନ ଅର୍ଥିରେ ଗୃହିଁ
କଲା ବା ଶବ୍ଦ ଛନ ।

ଗୁରୁ ଗୁରୁ କରି ଗରଜି ଉଠଇ
ମଡାଇ ନ ଦେବ ପାଣି
ଯମ୍ଭୁଁ ଭୀମରୂପ ! ନିରେଖି ସଭୟେ
ଉଡିଗଲେ ଟେବନି କାକ ।

କନ୍ୟାଟି ତାର ଯାଉଥିଲା ଅଟେଶ
କି ଅବା ଅଣିବ ଘୁଣି,
ଅଧିକ ଲୋଭରେ 'ମତୁ ନାହିଁ' କହି
କର ଧରେ ମାଆ ଟାଣି ।

ସହସ୍ର ଡାକେ ଅସିଲା ଦାସୀଏ
ଦନ୍ତୀ ପୃଥୁଳ-କାୟା,
'ଗୃହ ଧନ ହେଲା ବାହାଦର ଶେଷ'
କହେ, "ନାଆଁ ଦେବ ଥାଅ !"

'ଅଜଯାଏ କାହିଁ ଶୋଉଥିଲୁ ? ଅଜି
କାଲକୁ ହୁଜିଲା କିଦ ?
'ସେ ଧନ ଥିଲେ ତୁ ଫୋପାଡ଼ି ଥାନ୍ତୁ
ଖିଞ୍ଚିପୁଷ୍ଟି ନାନାବିଧ ।

'ଅଦ୍ଧ ଯାଏ ଥିଲା, ବାସି ବୋଲି ଅଜି—
ଢାଳି ଦେଲେ ବାବୁଆଣୀ,
'ମିଠାଇ ଭାକର ଧରି ଗଲା ଲାଲ
କିଏ ଖାଅନ୍ତା ଜାଣି ।

'ଅସ୍ କର୍ ଚିଣେ ଫୋପାଡ଼ୁଛି ତା ମୁଁ;
ଦେଖିବୁ କି ଥିବ ଅବା !
'ମେହେନ୍ତର ଗାଡ଼ ଅଫିସ ଏ ଯାଏଁ
କହୁଥିଲା ବୁଢ଼ା ନବା ।

ଭାଗ୍ୟକୁ ତୋର ଥିବ ଯଦି କିଛି
କୁକୁର କୁଅ ମୁଣ୍ଡୁ;
'ନାହିଁ, ନାହିଁ, କେହି ଯାଇ ନ ଥିବେ ତ
ସେଇ ଟିଣ ଭିତରକୁ ।"

କହିଦେଇ କ୍ଷଣେ ଅନ୍ତର୍ଦ୍ଧାନ !
ଅସକର୍ ଟିଣ ଠାବ୍,
ପୃଥୁଳ କାଯ୍ୟାକୁ ବିକଳେ ନିରେଖି
ଧୀରେ ଲେଉଟିଲା ନାସ୍ତି ।

ହିତାହିତ ତାର ସ୍ଥାନ ଅସ୍ଥାନ
ବାରଣ ତ ଟଳେ ନାହିଁ,
ବ୍ୟାକୁଳ କେନେ ଅସ୍ କର୍ ଟିଣେ
କବା ଅଛି ଦେଲା ଗୁହିଁ ।

ଭାଗ୍ୟକୁ ତାର ଛୁଇଁ ନାହିଁ କେହି !
ପିଲାଟାଏ ଗଲା ପଶି,
ପାଉଁଠି ଅଟିକା ପୂର୍ଣ୍ଣ କଲା ତା
ନୟନ ଉଠିଲା ହସି ।

'ଦୁଇବେଳା ଯିବ" ନାହିଁ "ତନ ବେଳା
ଖାଇଲେ ତା ରଖି ଥୋଇ"
ମୋ ଭାଗ ଅଧିକ, ଅଛିଛି ମୁଁ !'—କହେ
ପୁଅ ଉଲ୍ଲାସ ହୋଇ ।

ଖାଇଲେ ଯେତେକ ଗଛ ମୂଳେ ବସି
ଯାଉଥିଲା ସେହି ଶ୍ୱାନ,
ବସ୍ତ୍ର ଭାଡରେ ଗୃହିଁଲାରୁ ଝିଅ—
ଅନନ୍ଦେ କରେ ଦାନ ।

ଅନ୍ତେ ସେହି ଭୋଜନର ଶେଷେ
ଅଶୀର୍ବାଦର ପାଳି,
'ଧନ୍ୟ ବିଧାତା' ! 'ଜମିଦାର ବାବୁ—
ଜଇ ରହ' କହେ ବାଲୀ ।

ବଧାତାର ସେହି ମଙ୍ଗଳ ଗାନେ
ଚେଡେ ବା ଦାସୀର ଭାଗ ?
ଯେ ଦେଖିଛି କାହୁ କ୍ଷୁଧିତ- ଗ ଦ୍ୟ—
ଅନ୍ତର-ଅନୁରାଗ ।

ଅନ୍ତମ ସେହି ଭୋଜନେ ତୃପ୍ତି —
ବର୍ଣ୍ଣିବ ? ନାହିଁ ବାଣୀ ?
ପ୍ରଭାତ ପୂର୍ବୁ ଅନ୍ତିମ ନିଦେ
ନିଦ୍ରିତ ତନ ପ୍ରାଣୀ ।

ମୂଷ ପୃଷ୍ଠେ ତନୁ ଜର୍ଜର
ମଝିବା ଭଣ ଭଣ,
ସବି ଭିତରେ ହୋଇଛନ୍ତି ଯେ କେତେ
ବଦନ୍ନ ଉଦ୍‌ବମନ;

କୁଞ୍ଚିତ ନାସା, ବିକଳ ବଦନ,
ନେତ୍ର କୋଟରଗତ,
ଊର୍ଦ୍ଧ୍ୱେ ଅନାଇ ଚାଲି ଯାଉଅଛନ୍ତି
ପଞ୍ଚ ସମ୍ଭବତ ।

ସାଙ୍ଗୀ ପିଠାରୁ ବାଜ ଅଣ୍ଟ କେତେ !
ଖାଇବାକୁ ନାହିଁ ପ୍ରାଣ !
ତୁଚ୍ଛ କର ତା ବମନକୁ ଗୃଟେ
ସେହି ପରଗତ ଶ୍ୱାନ ।

× × × ×

ତୀର୍ଥ ଭୂମି ସେ ପଥେ ଯୁଗେ ଯୁଗେ
ଦେବତାର ନିତ ବାସ,
ସେ ପଥେ ଗଲେଣି କେତେ ତଥାଗତ
କେତେ ଯେ ତୁଳସୀ ଦାସ ।

ସବୁ ଦିନ ପରି ଅଜ ସେହି ପଥେ
ଗାଇ ମୁଖେ ରାମ ନାମ,
ଘରୁ ଚଳେ ଜେ ଭକ୍ତ ଉଦାର
ସାରିବ ଗଙ୍ଗା ସ୍ନାନ ।

ଦେଖି ଏ ଦୃଶ୍ୟ ବିଭତ୍ସ କି ରୂ
ଶିହୁଙ୍କାର କରି ଉଠେ,
ଅଶୌଚ ଭୟେ ଦ୍ୱିଗୁଣ ବେଗରେ
ରାମ ନାମ ମୁଖୁ ଛୁଟେ ।

ଗର୍ଜ୍ଜି ଉଠଇ ବୁଭୁକ୍ଷୁ ଶ୍ୱାନ !
—ଦନ୍ତ ପନ୍ତି ଦଶେ,—
ଜୀବନ ପଞ୍ଝ ଅନ୍ତିମ-ରହସ
ଅଦ୍ଭୁତ ଢାଳଇ କି ରସ



# ନରବଳୀ

କାଳନ୍ଦୀଚରଣ ପାଣିଗ୍ରାହୀ

ରାଜ୍ୟ ପଡ଼ନ୍ତୁ ଶତ୍ରୁ କବଳେ
ସକଳ ଶିଳ୍ପ ତ ଗଲାଣି ତୁଟି
ଦେବତା-ଭୁଇଁରେ ମାନବ ନାହିଁରେ
ନ ମିଳେ କାହିଁ ତ ଭିକ୍ଷା ମୁଠି !

ଉଠେ ହାହାକାର ଦେଶ ଛାରଖାର
କ୍ଷୁଦ୍ର କଳହ ରହୁଛି ବେଢ଼ି
ସାନ ସାନ ଜାତି ଧର୍ମର ଭେଦ
ସବୁରି ହାତରେ ଦେଇଛି ବେଡ଼ି ।

ସବୁରି ଅଧରୁ ହାସ୍ୟ ଶୁଖିଛି
ପଶୁଠାରୁ ହୀନ ମାନବ ଜାତି
କୁକ୍କୁରଠାରୁ ଘୃଣ୍ୟ ଅଧିକ
ପର ପଦାଘାତେ ନ ଜଳେ ଛାତି ।

ଗୁରୁ ଗୋବିନ୍ଦ ଚିନ୍ତା-ମଗନ
ବଦନେ ତାହାର ବିଷାଦରେଖା,
ଦୁର୍ଦ୍ଦଶା ଘୋର ଅନ୍ତରେ ତାର
ବୋଳିଛନ୍ତି କରୁଣ କାଳିମା ଲେଖା

ଦୀର୍ଘ ଶୃଙ୍ଖଳ ଟୃଶ୍ରୁ ଉଗଳ
ସିନ୍ଧୁର-କଲ୍ ଝଂଠେ ଖଲେ,
ନେନେ ତାହାର ଜଳେ ପ୍ରତିଜ୍ଞା
ଅଙ୍ଗ ଶୋଧୁଛନ୍ତି କୃପାଣ ଟାଲେ ।

ଶକ୍ତିଦେବୀର ଅର୍ଚ୍ଚନା କରି
ନିଦ୍ରା ନ ଜାଣେ ଦିବସ ନିଶି
ଶତ୍ରୁ ପୀଡ଼ାରେ ସ୍ୱଜ୍ୟ ତାହାର
ମୃତ୍ତିକା ପରେ ଯାଉଛନ୍ତି ମିଶି ।

ଶତ ସହସ୍ର ପରଜା ଭିତରୁ
ପାଞ୍ଚଟି ବୀର ମାନବ ଲୋଡ଼ା,
ମଣିଷ ପରି ଯେ ମଣିଷ ହୋଇବ
ନୁହଇ ବ୍ୟାଘ୍ର, ହାତୀ କି ଘୋଡ଼ା ।

ଜନ୍ମ ମାଟିର ଦୃପ୍ତ ନିଶାଣ
ଉଡ଼ାଇବେ ଯେହୁ ଗଗନ ତଳେ,
ଫେରାଇ ଆଣିବେ ଅହୃତ ସ୍ୱତ୍ୱ,
ଆତ୍ମା ନିଜର ଓଠାର ବଳେ,

ଫେରାଇ ଆଣିବେ ଦେଶ ଜନନୀର
ଗତ ଉନ୍ନତ ମହତ ଯେହ୍ନୁ;
ପାଞ୍ଚଟି ବୀର ଲୋଡ଼ା ଅଜି ତାର
ଅଞ୍ଜଳିରେ ଦେବେ ରକତ ଦେହୁଁ ।

× × × ×

ଶକ୍ତି ଦେବୀର ବନ୍ଦି ଚରଣ
ଗୁରୁ ଗୋବିନ୍ଦ ହୋଇଲେ ଉଭା
ବାହୁରେ ଖେଳଇ ଉଷ୍ଣ ରୁଧିର
ବକ୍ଷେ ତାହାର ଜାଗଇ ଯୁବା

ବଜ୍ର ସମାନ ଉଠିଲା ଚମକି
ସହସା ମାନସେ ଉପାୟ ଏକ
ବାନ୍ଧବ ପାଞ୍ଚ ସେନାପତି ହେବୁ
ଜନ୍ମଭୂମିର ରଖିବ ଟେକ ।

ଶିଷ୍ୟ ସକଳ ଅହ୍ୱାନ ଭାଷେ
"ଦେବତା ଅଜି ରେ ମାଗିଛି ବଳି,
"ମାତାର ସ୍ନିଗ୍ଧ ନୟନ ଯୁଗଳୁଁ
ଦେଖ ରୋଷାନଳ ଉଠଇ ଜଳି ।

"ମାନବର ମଥା ପାଞ୍ଚଟି ଲୋଡ଼େ
ରକ୍ତ ପିଇ ସେ ଲଭିବ ତୋଷ
"ଜନମ ଭୂଇଁକୁ କରିବ ମୁକ୍ତ
ଖଡ଼୍‌ଗେ ଚୂର୍ଣ୍ଣିବ ଶତ୍ରୁ-ରୋଷ ।

"ରକ୍ତ ଲୋଡ଼ୁଛି ପଞ୍ଚ ପ୍ରାଣୀର
ମୁଣ୍ଡମାଳିନୀ ଚଣ୍ଡୀ ଅଙ୍ଗ
"ଦେଖ ଲମ୍ବ ଲମ୍ବ ଜିହ୍ୱା ତାହାର
ରକ୍ତ ମାଗଇ ଦନ୍ତ-ରାଜି

"ମାତୃଭୂମିର ଯଜ୍ଞ ବେଦୀକୁ
କିଏ ରେ ଯୋଦ୍ଧା ଢରବ ପୂତ
ଆହ୍ୱାନ ଶୁଣି ରକ୍ତେ ଏ ମାଟି
ସିକ୍ତ କର ହେ ଅଗ୍ରଦୂତ !"

× × × ×

ଚନ୍ଦନସ୍ନାନ ବନ୍ଧୁଭୁବନ
ସୂଚିର ପତନେ ହେବ ଶବଦ
ଗୁରୁ ଗୋବନ୍ଦ ଗମ୍ଭୀର ନାଦେ
କ୍ଷଣେ ସେ ଜନତା ହେଲ ତବଧ ।

ହୃଦ୍ୟାଦ୍ ତଟେ ବାଜିଲ ସେ ବାଣୀ
କନ୍ଦର ଓଚ୍ଚାଳୁଁ ଉଠିଲ ଧ୍ୱନି,
ହଜାର ଶିଷ୍ୟ ଜଡ ପ୍ରସ୍ତର
ଭୀତ ଶଂକିତ ସାରା ଅବନୀ

ରକ୍ତନୟନା ଦେବୀ ସମ୍ମୁଖେ
ବଳିର ସ୍ତମ୍ଭ ରହିଛି ପୋତା,
ଦେବୀ ସିନ୍ଦୂର ହସ୍ତରେ ଧର
ଡାକେ ଯଜ୍ଞେ ପ୍ରଥମ ହୋତା—

“ଦେବୀ ସିନ୍ଦୂର କପାଳରେ ଘେନ
ସ୍ତମ୍ଭେ ଦେବ ଢେ ପଡାଇ ଗଲା
“ନୀରବ ଏସନ କାହିଁକି ହେ ବୀରେ !
ଜୀବନ କି ତବ ଝଡେଇ ଗଲ ?

“ଜନ୍ମଭୂମିର ମୁକ୍ତି ଲଗି ରେ
ଭଗୀରଥି ଅଜ ହୋଇଛନ୍ତି ଲୋଡା ?
“ଛି, ଛି, କାପୁରୁଷ ରହିଛ କାତର
ଅଙ୍ଗାର ସମ ହେଲ କି ପୋଡା ?

“ ନିଜ ଇଜ୍ଜତ ଧନ ମାନ ଅଜ
ପର ହାତେ ଦେଇ ମାଗିବ ଭିକ,
“ ପଦଲେହନକୁ ମଣିବ ଭାଗ୍ୟ
ଏସନ ଜୀବନ ଧିକ ରେ ଧିକ !

“ଅଗରୁ ତାହାର ରଞ୍ଜିବ ନିକ
ଏ ମାଟି ନିଜର ରକ୍ତଧାରେ
“ଅସ ଅଖ୍ୟାତ ଅସ ଅଶ୍ରୁତ
ଅସ ଉଦ୍ଧତ ଉଗ୍ର ଅରେ !”

× × × ×

ଗୁରୁ ଗୋବିନ୍ଦ ବାକ୍ୟ ବାଣରେ
ଚେତନା ଅସିଲ ସକଳ ପ୍ରାଣେ
ଏକୁ ଏକେ ବୀର ହେଲେ ଗୁହାଁ ଗୁହିଁ
ପୁଣି ସେ ‘ଗୁରୁ’ର ଖର କୃପାଣେ

କୃତାନ୍ତ ସମ ନିଷ୍ଠୁର 'ଗୁରୁ'
ଏଣେ ଗଡ଼ାଇବ ଭୂତଳେ ମଥା
ମୂର୍ଚ୍ଛିବ କିଏ କେସନ ଜୀବନ
ମନେ ପଡ଼େ ପ୍ରିୟଜନର କଥା

ଜନତା ଗହଳୁଁ ଶାନ୍ତ ମୂରତ
ଅମାର୍ଯ୍ୟିକ ଏକ ଯୁବକ ସାର
ଧୀର ପଦେ ଅସି ନୁଆଁଇଲେ ମଥା
ବଦନେ ଲଗିଛି ହାସ୍ୟଗାର ।

କପାଳରେ କେଇ ସିନ୍ଦୂର ଟୋପା
ବୋଲେ ଗୁରୁ "ହେଲା ଗୋଟିଏ ବଳି
"ଅଉ ଚାରି ଗୋଟି ଲୋଡ଼ା ଏହିପରି"
ଶାଣିତ ଖଡ୍‌ଗ ଉଠିଲା ଝଳି ।

ଏକ ଏକ ହୋଇ ଅଉ ଚାରିଜଣ
ନମିଲେ ଗୁରୁର ଚରଣତଳେ
ସବୁରି ବଦନେ ହାସ୍ୟ ଫୁଟଇ
ଶାନ୍ତ ମୂରତି ବଚନ ବଳେ ।

ଅବାକ ଜନତା ରହିଛି ଚକିତେ
ବଳି କାତର ହୃଦୟା ସକଳ
ଗୁରୁ ଗୋବିନ୍ଦ ନୟନ ଯୁଗଳୁଁ
ବହେ ଦୁଇ ଧାର ଅଶ୍ରୁଜଳ ।

ଏକ ଏକ କରି ବୋଲେ ନାଏ ଗୁରୁ
ଗଦ୍‌ଗଦ ହୋଇ କହଇ ବାଣୀ
ହଜାର ଭକ୍ତରୁ ପାଞ୍ଚଟି ଏହି
ମଣିଷ ପାଇଲି ଅଜ ମୁଁ ଜାଣି ।
ଜନ୍ମଭୂମିର ହେବବେ ନିଶାଣ
ଶତ ଶତ ସେନା ଗଢ଼ିବେ ଏହୁ
ନୁହେ ଦେବୀ ବଳି ରକ୍ତ ଢାଳିବେ
ଜନ୍ମମାଟିର ଲାଗି ସେ ଦେହୁ



# ଓଡ଼ିଯ୍ୟା ପଖାଳ - ଭାତ

ବୈଷ୍ଣବ. ଚରଣ ଦାସ ।

ମୁଣ୍ଡିଅ- ମୁଣ୍ଡର ଖେଳୁଅଛ ବାଅ
ଟଙ୍କା ଭର୍ତ୍ତି ଘରେ ବହୁ
ମୁକ୍ତ ଆକାଶର ତୁଙ୍ଗ ଶିଖରରୁ
ଝରୁଥିଲ ବହୁ ରହୁ

ଜନମନ ଝୋଇ କେବେ ଚାଲୁଥାଏ
ନଣ୍ଡା ବରଗଛୁଁ ଉଠି
ଛାଟି ଡେଙ୍କେ ଭେଦ ଷବନ, ଅବଶେଷ
ପଳାଇ ଅସେ ଲେଉଟି !

ଅକାଶ- ମୁକ୍ତ ଶୂନ୍ୟ, ପବନ—
ପୂର୍ଣ୍ଣ ହରଷ - ଧାର
—ଜମ୍ବାଇଛି ପର୍ ଜଳଳର ଦେହେ
ଜୟ- ଗଉରବ- ମାଳା !

"ବଜା, ବଜା, ବଜା, ସେନାପତି ପୁଅ
ବଜା ରେ ଖରେ ମହୁରୀ
"ବର୍ଗୀ ଖଣ୍ଡ ପଶି ଗାଁ ମୁଣ୍ଡେ !" ବୁଢା—
ପାଇକ ଘୁଡ଼ନ୍ତି ହୁରୀ ।

ବୁଢା ପାଇକ ସେ — ପାଇକ ଗ୍ରାମର
ବହୁ ଦିନେ ଥିଲା ନେତା—
ବୀରର ସନ୍ତାନ, ବୀରଙ୍କ ଜନକ—
ଶତ୍ରୁ କ୍ଳେଶୀ ଶରଜେତା !

ବୀରସୁତେ ଅଜ ବୃନ୍ଦେ ରଖି ସାଥେ
ଯାଇଛନ୍ତି କାହୁଁ ରଣେ
ପାଇକ-ଗ୍ରାମର ରକ୍ଷକ ଏ ବୃଦ୍ଧ—
ଆଉ ନାହିଁ କେହି ଜଣେ !

ବୁଢା ଥର ଥର ହାତଟି ପକାଇ
ମୁଣ୍ଡେ, ଶୁଣୁଅଛି ଖରେ
ଗମ୍ଭୀର ନିମଗ୍ନ ଆଖି ଯୋଡି ଜଳେ
ଚାହିଁ ଅଛି ଗ୍ରାମଘାଟରେ ।

"ବଜା, ବଜା, ବଜା ବଜାରେ ମହୁରୀ
ସେନାପତି ଉଠ ବଜା" !
କମ୍ପମାନ କଣ୍ଠେ ଡାକ ଦେଲା ବୃଦ୍ଧ,
"ଗାଁ ମୁଣ୍ଡେ ଆସି ବଜା ।"

ମନ୍ତ୍ରଦ୍ୱୟୀ ବୁଢା ନାଥୁ ସେନାପତି—
କାନରେ ବାଜିଲା ଡାକ
ମନେ ପଡ଼ିଗଲା ବୁଢ଼ା ସଙ୍ଗେ ଗତ
ବିଜୟ ବାଜଣାଯାକ ।

ମନ୍ତ୍ର ବଳେ ଉଠି ଶତସ୍ମୃତି-ଯୁକ୍ତ
ମହୁରୀରେ ଦେଲା ଫୁଙ୍କ,
ଥରେ ଉଠେ ପଡ଼ ବାଜୁଛି ମହୁରୀ—
ବୁଢ଼ାର ନ ଛୁଟେ ହୁଙ୍କ !

ଭୁଲିଗଲା ସବୁ-ନାୟକର ଡାକ—
ଗାଆଁ ମୁଣ୍ଡେ ପିଦା କଥା,
ସବୁ ଭୁଲି ଦେଇ କୁହାଁରୁ କାବା
ବାଜୁଛି ଅତୀତ କଥା ।

ପାଇକ-ପରତେ ଖେଳିଲା ବିଜୁଳୀ
ମହୁରୀ ଶବଦ ସଙ୍ଗେ
ବିହ୍ୱଳ ଉଲ୍ଲାସେ ଧନୁ ଶର ଠେକି
ନାଚିଲା ସମର-ରଙ୍ଗେ ।

ମନେ ଖେଳିଗଲା ଯଉବନ କଥା—
ଯେତେ ଗଉରବ ରଣ
କ୍ଷଣେ କୁତୂହଳୀ ନାରୀଙ୍କୁ ଅନାଇ—
ମରଣ କଲା ସେ ପଣ ।

ଏକ, ଦୁଇ, ତିନି—ଉତ୍କଣ୍ଠା ସବାର
କାହୁଁ ଦେଖାଦେଲେ ଅସି
ନିଃଶବ୍ଦ ସରଣେ ଘୋଟକ ଛୁଟାଇ
ଉଡାଇ ଧୂଳିକା-ରାଶି ।

ନାଚୁ ନାଚୁ ବୁଢା ବାଉଳାଙ୍କ ପରି
କ୍ଷଣକେ ହୋଇଲା ସ୍ଥିର
କ୍ଷଣକେ ଶିଥିଳ ଓଠଟି କାମୋଡ଼ି
ଧନୁରେ ଯୋଖିଲା ତୀର ।

ଟଳ ଟଳ ପାଦ ହସ୍ତ ଥର ଥର
ଶ୍ରମଝାଳ ବହେ ଖର,
ଦୂରୁଁ ଏ ମୂରତି ଦେଖି ବୈରୀ ମନେ
କାହୁଁ ପଶିଗଲା ଡର !

ଶମି ଅଶ୍ୱବେଗ ବଲ୍‌ଗା ନମାଇ
ବରଗି ରହିଲେ କ୍ଷଣେ,
କ୍ଷଣେ କି ବୈରୀ ଭିନ୍ନ ଭିନ୍ନ ଦିଗେ
ଖେଳିଗଲେ ଜଣେ ଜଣେ ।

ସହସା ବୈରୀହେଁ ବୈରୀଦଳେ ଛୁଟି
ବୃଦ୍ଧେ ପକାଇଲେ ଘେରି,
ବୃଦ୍ଧ-ଯୋଧା ଧନୁଃଶର ବୈରୀଦଳେ
ଧରି ନାଚେ ଫେରି ଫେରି !

ବରଗୀ ସବାର ଜାଣିଲା ନିଶ୍ଚିନ୍ତ
ଅଟଳ ଅଚଳ ବୀର,
ଭରସି ନ ପାରେ ତୀରମୁଖେ ଆସି
ଦେବାକୁ ବଳି ତା ଶିର ।

ପ୍ରବୀଣ ପାଇକ ନ ଛାଡେ ତା ଶର—
ମାରି ଗୋଟାଏ ବଇରୀ
ନାହିଁ କିଛି ଫଳ—ଯେଣୁ ପରକ୍ଷଣେ
ଆନ ବରଗୀରେ ଘେର !

ନାନା ନାଟ ତେଣୁ ଶରମୁନେ ଛାଡ଼ୁ—
ଦସ୍ୟୁଙ୍କୁ ରଖିଲ ଦୂରେ,
ପ୍ରାଣ ଥିବାଯାଏ ଗ୍ରାମ-ରକ୍ଷକ ସେ
—ଶତ୍ରୁ ନ ପଶିବ ପୁରେ !

ବୃଥା ରଣ ଦେଖୁଥିଲ ଅନ୍ୟମନସ୍କେ
ଦୂରୁଁ ଏକ ଅଶ୍ୱାରୋହୀ,
ଶିଙ୍ଗା ଫୁଙ୍କି ଅଶ୍ୱ ଛୁଟାଇ ନିମିଷେ
ଆସି ପ୍ରବେଶିଲ ତହିଁ ।

ଯିଏ ଯେଉଁଠାରେ ଥିଲେ ସେ ଗୃହେହିଁ
ରହିଲେ ସେଠାରେ ସ୍ଥିର,
ନବ ଅଶ୍ୱାରୋହୀ — ନାୟକ ପରି ସେ—
ବୃଦ୍ଧ ଶ୍ମଶ୍ରୁଢାକ ଗୀର—

"ପାଇକ ବୁଢାରେ, ଅଛୁ ତୁ ମୂର୍ଚ୍ଛା—
ବରଗୀଙ୍କ ସଙ୍ଗେ ବାଦ
"କରି କି ପାଇବୁ, ପ୍ରାଣଟି ହାରିବୁ—
ମେଣ୍ଟିଯିବ ସବୁ ସାଧ !

"ଅଛୁ ତୁ ଓଡ଼ିଆ, ଓଡ଼ିଆଙ୍କ ପରି
ପଳା, ଘରେ ଯାଇଁ ଶୁଅ —
"ମୁଣ୍ଡଟି ରଖିବା ଇଚ୍ଛା ଥାଏ ଯଦି
ଜୀବକୁ ଏଠାରେ ଥୁଅ !"

ଏହା ବୋଲି ବର୍ଗୀବର ନିଜ ମୁଠେ
ମହା ସମାଦରେ ହାତ
ପକାଇ ହସିଲ ଝଙ୍ଗାସି ଭସିଲା
"ଓଡ଼ିଆ ପଖାଳ-ଭାତ —

"କେତେ ପାଇକ ତୁ ଦେଖିବା ରେ ବୁଢା
ଜାଣ ମୋଡ୍ ଦେଖି ଥରେ ।"
ଅପଦ ମସ୍ତକ ଥରୁଁ ଥରୁଁ ବୁଢ଼ା
ମାତା ଭଗବତୀ ସ୍ମରେ ।

"ଅଚ୍ଛା ହେଉ" ବୋଲି ଅଟ୍ଟାଳି ସଦମ୍ଭେ
ରହିଲା କ୍ଷଣକେ ସ୍ଥିର
ପରକ୍ଷଣେ ଦର୍ପେ ଛାତିକୁ ଫୁଲାଇ
ଓଠାର ଧରିଲା ତୀର—

ବରଗିଏ ଦୁହିଁ ଦେଖିଲେ ସଭୟେ
ବୁଢା କରୁଅଛି ନାଶ,
ସରଦାର ମୁଣ୍ଡ ଏଣେ ହାତ ତାର
ଧରିଲାଣି ନାକ ପାଶ !

“ଦେଖ, ଦେଖ !” ବୋଲି ବୀରସିଂହ ହାତ
ନାକପରେ ରଖି ଦଣ୍ଡେ
ଦେଖି ଦେଖି ବୁଢା ଛାଡ଼ିଦେଲା ଶର
ବରଗୀନାୟକ ଗଣ୍ଡେ !

ସରଦାର ଏଣେ ଶିଙ୍ଗା ଫୁଙ୍କି ଅଜ୍ଞା
ଦେଉଥିଲେ “ମାର ମାର”,
ନାକପରେ ହାତ, ଶିଙ୍ଗାଟିରେ ମୁଖ—
ଅଧରେ ହାସ୍ୟର ଗାର

ଫୁଙ୍କା ହେଲା ନାହିଁ ଶିଙ୍ଗା ନାୟକଙ୍କ
ଅକୁହା ରହିଲା କଥା
ପପାତ ଧରଣୀ-ତଳେ ବୀରବର
ସହ ନାକ ସହ ମଥା !



# ନାପିତୁଣୀର ଗାନ୍ଧୀ-ପୂଜା

ମାୟାଧର ମାନସିଂହ

— ୧ —

ଆସିବେ ମହାତ୍ମା ଗାନ୍ଧୀ ପଡଉ ଢଣ୍ଢାରେ
ଶୁଣେ ଗ୍ରାମ-ନାପିତୁଣୀ ତା ଗ୍ରାମଟୋଳାରେ ।

ବାନ୍ଧୁଛନ୍ତି ସ୍ୱେଚ୍ଛା-ସେବୀ ତାଳପତ୍ର-ବାସ,
ଲଗିଅଛି ଜନତାର ଦ୍ରୁତ ଯାଅ ଆସ ।

ଦେଖୁଛନ୍ତି ନବ ଲୀଳା ଗ୍ରାମ-ନର-ନାରୀ,
ହେଉଛନ୍ତି କୁହାକୁହି ପରସ୍ପରେ ।

କି ଦେବେ ଗାନ୍ଧୀରେ ଭେଟି; ବିରଦ୍ର ସକଳେ—
ହେଲେ କି ଦେବତା-ଦେଖା ହେବ ଶକ୍ତି-ବଳେ ?

ଶକ୍ତି ହସ୍ତେ କରିବାକୁ ସନ୍ତ-ଦରଶନ
ଦରିଦ୍ର ହେଲେହେଁ ତାଙ୍କ ମାନୁ ନାହିଁ ମନ ।

ଧନ, ଧନ ନାପିତୁଣୀ ଭାବେ ମନେ ମନେ—
"ମୁଁ କାହିଁ ବନ୍ଦିବି ନେଇ ? କିଛି ହେଲେ ଅନେ

ଦେଇ ଅର୍ଚ୍ଚିବେ ସେ ପୁଣ୍ୟ ଚରଣ ଯୁଗଳ,
ମୋର ତ ସେଥିଲାଗି ନାହିଁ କିଛିହିଁ ସମ୍ବଳ !

ତେବେ କି ଏ ପୂଜ୍ୟ ଦର୍ଶ ଯିବ ଖାଲି ଖାଲି !
ଦ୍ୱାରେ ମୋ ବାରୁଣୀ-କୁଣ୍ଡ ; ପାଦଟି ପଖାଳି

ପାରିବନି ପାଦପଦ୍ମ ? ପଦ୍ମତ ପାବନ;
ହେ ଦେବତା ହେ ମହାତ୍ମା, ହେ ଗାନ୍ଧି-ସ୍ୱଜନ,

କୋଟି କୋଟି ନରନାରୀ ନମନ୍ତି ପଦ୍ମରେ
ଦରିଦ୍ର ମୁଁ ନାହିଁ ବୋଲି ଧନ ମୋହ କରେ

ପାରିବନି ବନ୍ଦି ତବ ପରମ ଚରଣ,
ପାଇବନି କିଛି ତବ ପୁଣ୍ୟ ବିତରଣ ?

ଜୀବନେ କରିନି ପୁଣ୍ୟ, ନିରକ୍ଷର ନାରୀ,
ଆଜି ଏ ବୟସେ, ମାଥେ ବହୁ ପାପ ଭାରି

ଲିଭିଲ କରିଲେ ହେଲେ ତୋର ପଦାର୍ଚ୍ଚନ
ହୁଅନ୍ତା ବା କିଛି ହେଲେ ଧର୍ମ ଅରଜନ ।"

—୨—

ପ୍ରଭାତଲା ବସ୍ତବାଟ୍ଟ, ପଡ଼ିଲା ଚହଳ
ଗ୍ରାମ-ଉପବନେ ଯହିଁ ଗାନ୍ଧୀ, ଗାନ୍ଧୀଦଳ

ହେଉଛି ଅସି ଉପଗତ । ପଚ୍ଛିଲ ବସ୍ଥର—
ନାପିତ ନାହିଁ ଏ ଗ୍ରାମେ ? ହୋଇବେ ଫସ୍ତାର

ମହାତ୍ମା ଏ ପ୍ରଭାତରେ ! —ସ୍ୱେଚ୍ଛାସେବକଗଣ
ଧାଇଁଲେ ଦ୍ରୁତଗତେ ଗ୍ରାମେ କର ଅନ୍ୱେଷଣ ।

ଫେରିଲେ ଯେବେ ସେ ପରେ, ପୂର୍ବ ନାପିତୁଣୀ
ପଛେ ତାଙ୍କ, ଅଖି ଭୂମେ, ମୁଖେ ନାହିଁ ବାଣୀ ।

ସୁମଣ୍ଡିତା ଓଡ଼ିଅଣୀ ଅଯ୍ୟ-ଅଳଙ୍କାରେ,
ଭଂଜାସ୍ଥ ନାୟିକା ଯେଉଁ ଚଳେ ଅଭିସାରେ !
ସ୍ତବ୍ଧ ସର୍ବ ସଭା-ଜନେ, ଗାନ୍ଧୀ ସ୍ନେହେ ହସେ
ନାପିତୁଣୀ ଅଗମନେ, କୌତୁକ-ରଭସେ !

ଭାଷନ୍ତି ମହାତ୍ମା ହସି 'ଅଚ୍ଛା ତ ଏ କଥା !'
ନାପିତୁଣୀ ଖୁର ଘଷେ କାନ୍ଦୁ ପୋତ ମଥା

ଏକ ଯୋଗେ ଏକ ମନେ, ଧୀରେ ଦେଇ ଜଳ;
ମହାତ୍ମା ସହିତେ ସ୍ତବ୍ଧ ସର୍ବ ସଭାସ୍ଥଳ ।

କଟମ ସେ ପରଖି ଖୁର, ମୁଣ୍ଡେ ଥାପି କର
ନରଯରା ଓଡ଼ିଅଣୀ କରିଲା ଉଜ୍ଜ୍ୱଳ

ପତିତ-ପାବନ ମହା-ମାନବ ଗାନ୍ଧୀରେ
ମସ୍ତକେ ବୁଲାଇ ଅସ୍ତ୍ର, ହସ୍ତ ଦେଇ ଧୀରେ

ଦୁଇ ଗଣ୍ଡେ, ଶତ୍ରୁକରେ ପରମ ଆଦରେ
ଅଣିଲ ବୁଲଇ ଖୁର ଚରଣ ଯୁଗଳେ

ନମି ପୁଣି ନଖପନ୍ତ୍ର କରଲା ନିର୍ମଳ
[illegible] ଦେଇ ତାର ସମଗ୍ର କୌଶଳ ।

ପୃଚ୍ଛନ୍ତେ ଗାନ୍ଧୀ ତାରେ "ପିନ୍ଧିଛ ଜନନୀ !
ଏ ଯେଉଁ ଭୂଷଣ-ଭାର କି ଲଭ କହ ନି—

ହୁଅଇ ଏଥିରେ ତବ !"—ଭାଷଇ ଗଦ୍ ଗଦ
ନାପିତୁଣୀ ସ୍ନିଗ୍ଧ-କଣ୍ଠେ—"ମୋହର ସମ୍ପଦ

କହିଁଛୁ ହେ ମହାତ୍ମନ, ପାଇବ ଭୂଷଣ !
ଏ ପ୍ରଭୁ ଅଣିଛି ମାଟି ତୁମରେ ଦର୍ଶନ

ଭରିତ ଯୌବନ ମୁଁ ଅଙ୍ଗ । ବିନା ଭୂଷଣରେ
କେମନ୍ତେ ଅସୁନ୍ଦର ଦେଖି ଦେବତା ତୁମରେ ?

ତାପରେ ତା କରେ ଯେବେ ଗୁଞ୍ଜିଲେ ତା ମୂଲ
ଗାନ୍ଧୀଙ୍କର ପାର୍ଶ୍ୱଜନେ; ତୁରତେ ତା ଠୁଲ

କରି ଧୀରେ ଗାନ୍ଧୀଙ୍କର ଚରଣକମଳେ
ଜୀବନର ପୁଣ୍ୟ ଯେନ ନାପିତୁଣୀ ଚଳେ ।



# ମରିନାହିଁ ସେ ତ ମରଣ-ଜୟୀ

ରାଧାମୋହନ ଗଡ଼ନାୟକ

କାଳ ମନ୍ବନ୍ତର ପଡ଼ିଥିଲା ଘୋର ଭୟଙ୍କର
ନ' ଅଙ୍କର ।
ସୁନାର ଅମର ଉତ୍କଳ ତାର କାଳିମା ଭୂଇଁ ।
ହାଡ଼ମାଳ ସେଜ ଦିଶୁଥିଲା ସତେ ମଶାଣିଭୂଇଁ ।
ଲକ୍ଷ୍ମୀର ଦେଶ ହୋଇ ଯାଇଥିଲା ଅନ୍ନା କି ଦୂର !
ହା ଅନ୍ନ ଡାକେ ପୂରି ଉଠୁଥିଲା ପଲ୍ଲୀପୁର ।
ଦୁଇ ଦାନା ଧାନେ ନ ପାଇ ଭୋକ
ଝଡ଼ପୋକ ପରି ଝଡ଼ି ପଡ଼ୁଥିଲେ ବହୁତ ଲୋକ ।
କଳନା ନାହିଁ,
ହାଇ ରେ ହାଇ ।

କଟକ ଜିଲ୍ଲାର ଅଜଣା ସେ କେଉଁ ପଲ୍ଲୀ କଣେ
କେବଳ ଜଣେ,
ବାର ବରଷର କେବଳ ଭିକାରୀ ବାଳକଟିଏ
ମରଣର ଦାଉ ଜୟ କରିଥିଲା ମରତ ଧାମେ ।
ତା' ଗୀତ ଆଜି
ଆକାଶ ବତାସେ ପ୍ରତି ନିଶ୍ୱାସେ ଉଠୁଚି ବାଜି ।

ସନାତନ ତେବେ ଘ'ର ଦୁଖେ
ଦୂର ଗ୍ରାମେ ଯାଇ ଭିକ ମାଗୁଥିଲା କାତର ବୁକେ ।
ସବୁଏ ଅନ୍ତୁର ବଞ୍ଚାଇବାକୁ ଜୀବନଟିକ
ଏତେବେଳେ ଭଲା କିଏ ସେ କାହାକୁ ଦେଉଛି ଭିକ ॥

ଦୁଇ ଦିନ ଯାଇ ତିନି ଦିନ ହେଲା ତଥାପି କାହିଁ
କଚଟେଲ ତାହାର କ୍ଷୁଦ ମୁଠାଏ ବି ଜୁଟିଲା ନାହିଁ ॥
ଚରକା ଘରଏ ଘୂରି ଘୂରି ସ୍ତିଏ ହୋଇଲା ଅଥା
ଘେଁ ଘେଁ ତାର ଘୂରିଲା ମଥା ।

ସାନ୍ତ୍ୱନ ଘର ଦ୍ୱାରବାର ପରେ ଫିଟିଲା ମୁଦ
ସା'ନ୍ତ୍ରର ଘରୁ ପାଇଲା ଯେବେ ସେ ଦଉଁଟି କ୍ଷୁଦ ।
କପାଳେ ଲଗାଇ କହିଲା, "ପ୍ରଭୁ,
କାହିଁ ଜଣାଇବି ? ବାଳୁତର ଦୁଃଖ ଜାଣ ତ ସବୁ ।"

ଠିଆ ହେଲା ଯହୁଁ ଅଗ ଦୁଆରେ,
ପଧାନ ବୁଢାଟି କହିଁଲେଇ ତାକୁ କହିଲା, "ବା' ରେ
ଦେଇଥିଲେ ପ୍ରଭୁ ଧନସମ୍ପଦ ସନ୍ତାସୁଖରେ
ଦିନ ଯାଉଥିଲା—ପୁଅ-ଝିଅ-ଶିଶୁ-କଉତୁକରେ ।
ଏଇକ୍ଷଣି ଅମେ କାଙ୍ଗାଳ ଜାଣ ତୋହର ପର
କାଣ ମୁଁ ନଦବ ରେ ଦୁଇଦିନ ହେଲା ଜଳ ନ ଛୁଇଁ ।

ସେଇ ଯେ ଦଶୁଛି ହେଉଥିଲା କୋଠା
ସେଇଠିକି ଗଲେ ମିଳିପାରେ ଅବା ମୁଠେ ଦି' ମୁଠା ।"

ଡାକିଲା ଯାଇ ସେ ଜମିଦାର ଘର ଫାଟକ ଆଗେ,
ଦଣ୍ଡକ ପରେ ଦାସୀଟାଏ ଦ୍ୱା'ର ପଡ଼ିଲା ସଗେ ।
"ଭିକ ତ ମାଗିବୁ କଅଁରେ ଏଡ଼କ୍କା ପାଟିଟେ କରୁ ?
ସା'ନ୍ତେ ଉଠିଲେ ଛୁଡ଼ିଯିବ ତୋର ପିଠିରୁ ଗଲ୍ଲ ।
ଏଇଠି ପଡ଼ିଛ ଏଇଠି ତୁମର ହୋଇଛ ଠିକ
ଧନ ସତ ଖାଲି ଟଙ୍କଲେଇ ଖାଉଛ ଭିକ-ଭିକ ।"

**ଅନ୍ଧରି ଭାଗ**

"ଅରଜି ଅଣି କି ଥୋଇ ଦେଇଅଛୁ ତମର ବାପ ?"

ଭିକାରୀର ବୁକେ ବଚ୍ଛେଦ୍ର-ନିଆଁ ଉଠିଲା ଜଳି
ପୁଣି କି ଅବେବଶେ ନୟନ ନିମେଷେ ଗଲା ତ ମରି ।
ସନାତନ ତହୁଁ ଉତ୍ତର ଦେଲା ଭାରି ନରମ,
"ଦାତା ଅରଜିଟ ଦେଲେ ତାର ହେବ ଭାରି ଧରମ ।'

"ଧଅ ଧଅ ବେଗେ ପଡ଼ିଛ ମୋହର-କାମ ବହୁତ
ପୋଲାଖିଅ ସାଥେ କେ କହି ପାରିବ ?"

କହୁ କହୁ ତ

ଗୁଡ଼ଲ ଫୁଠିଛ ଚମ୍ପକେ ଅତ.ଚମ୍ପଲେ
ଛୁଆଁଉ ଦେଲା ମୁକୁଲା ତାହାର ଅଁଚଲେ ।

ଗୁଡ଼ଅ ଦୋକାନ ଦେଖିଲା ଯାଉଁ ସେ ଅଳପ ଦୂରେ
"ମୁଠି ମୁଠେ ଦିଲୁ" ଜଣାଇଲା ବଡ଼ କାତର ସୁରେ ।

ଦୋକାନୀ କହିଲା, "ମୁଁ ବେବସାୟୀ
ବଜାକଣା ଯାଗା, ଏଠି ଯେ ଖୋଜୁଛୁ ମାଗଣା କାହିଁ ?"

"ତିନି ଦିନ ହେଲା ମରୁଚି ହୁଲ ଦେଇ ଗୁଡ଼ଅ ସାଉ,
ମୁଠେ ଦିଅ, ଭୁକ ଲାଗୁଚି ଅଉ ?"

"ଯା, ଯା ଏଠୁ ଦେଇ ଦେଇ ଅମେ ମଲୁଣି ଭଲା
ତୁଇ ମରିଗଲେ ସଂସାରେ କାର କଅଣ ଗଲ ?"

ପଅଁ କରି ଗୋଟେ ନିଶ୍ୱାସ ମାରି ହତାଶ ବୁକେ
ଦାଣ୍ଡେ ଦାଣ୍ଡେ ବୁଲିଲା ବାଳକ ଭ'ରି ଦୁଖେ ।
କୁଅଡେ କାହିଁ ।
ଦୃଷ୍ଟି ଫେରଇ ଚାହିଁଲା ନାହିଁ ।

ଗାଆଁ ମୁଣ୍ଡରେ ଚାଳ ଘରଟିଏ—ମୁହଁରେ ତାର
ବଉଳ ଗଛଟି ମେଲିଚି ପତର-ଗହଳ ଡାଳ ।
ବସି ଗଲା ସେଇ ପିଣ୍ଡାପରେ
ଅକାଶ ପାତାଳ ଭାଳିଲା ବହୁତ ମରମ ତଳେ ।

ଘଡ଼କେ ସେ ଘରୁ ବାହାରିଲା ଜଣେ ପ୍ରୌଢା ନାରୀ
ଥକା ହୋଇ ତହୁଁ ଶୁତା ହୋଇଗଲା କଅଣ ଭାଳି ।
ବୁଲାଇ ସେନେହ-ସଜଳ ଆଖି
ସନାତନ ଦେହେ ଅମିୟ ପରଶ ଦେଲା କି ମାଖି ?

ସ୍ନେହ-କାଙ୍ଗାଳ ବାଳକର ତୃଷ୍ଣା ବୁଝିଲା ତାହା
ସତେ କି କୁଆଡ଼େ ଦୂର ହୋଇଗଲା ପ୍ରାଣର ଦାହା !
ତନ୍ତୁ-ଗ୍ଲାନି-ମ୍ଳାନ ମରୁର ପଥେ
ସ୍ନିଗ୍ଧ ଜଳର ଝରଣା ଗୋଟିଏ ଦେଖିଲା ସତେ !
ବହୁତ ଭରସା କରି କେତେ କହିଲା ବିନୟ-ବାଣୀ,
“ପିଇବାକୁ ମତେ ଦେବ କି ମାଉସି, ଟୋପାଏ ପାଣି ?
ଦେବ ଯଦି ଦିଅ, ବେଇଗି ଦିଅ,
ତିନି ଦିନ ହେଲା ତୋରାଣି ଦେଖିନି, ଜଳୁଛି ଦେହ ।”
ତର ତର ହୋଇ ଘରେ ଯାଇ ତହୁଁ କରୁଣାମୟୀ
କଂସାଏ ଭାତ ଅଣି ପେଇଲ ଗେ ଥୋଇଲା ତହିଁ,
“ପିଇ ଦେ, ଅରେ, ଲାଗିବ ଭଲ,
ହାଲିଆ ଦେହରେ ଆସିବ ହେଲେ କେ ଟିକିଏ ବଳ ।”

ସନାତନ ତହୁଁ ପିଇଲା ଉପର ତୋରାଣିତକ
ମାଇଲା ଧକ୍କ ।
ଯେଉଁ ଭାତତକ ରହିଥିଲା ତହୁଁ ନ ଖାଇ କଲେ
କରୁଣାମୟୀକି ଗୁହାରିଲା······ବିକଳେ ଅତି ବକଲେ ।

“ତିନି ଦିନ ହେଲା ଅରେ ବାପ କିଛୁ ଖାଇନୁ ପରା
ଖାଇ ଦେଉ ନାହୁଁ, ମନରେ କଅଣ ଭାବୁଛୁ ଭଲା
ମନରେ କଅଣ ଭାବୁଛୁ ଆଉ ?
ଲଜ୍ଜଉଛୁ କିଆଁ ଖୋଲି କରି କହୁ ନୋହିଁଅ ଯାଉ ।”

"ନାହିଁ ଗୋ ମାଉସି, କିଆଁ ଲୁଗୁଇବ ତୋ' ଅଗରେ ?
ଅସିଲ ବେଳେ ତ ଖାଇବାକୁ କିଛି ନ ଥିଲା ଘରେ ।
ଜାଉ ଭୋଗୁଥିଲା ବୋଉ ମୋର କିଛି ନ ଥିବ ଖାଇ
ଅଉଟି ପାଉଟି ହେଉଥିବ ଖାଲି ମୋ ସାନ ଭାଇ,
        କହିଲ କିମିତ ଦେବି ମୁ ଗେଲା ?
ଘରେ ନେଇ ଗଲେ ଖାଇବୁ ଏତକ ସବୁଏ ମିଳି ।"

ଆକାଶ ପାତାଳ ଭାଳିଲା ସେ ତହୁଁ ମରମଗତେ
                କିଅଣ ସତେ !

"ପିଲା ବୟସେ ତୁ କେତେ ବଡ଼ ଗୁଣ ଅଛୁ ରେ ଧନ !
ମୋହର ଥିଲା ଯେ ରଙ୍କୁଣୀ ଆଳ
        ଗୁଣର ସେ ଥିଲା ତୋହର ପର ।"

କହୁଁ କହୁଁ ତାର କଂପି ଉଠିଲା ମୁଖ'ର କଥା
ଲୁହ ଭରି ଉଠେ ଛଳ ଛଳ ହେଲା ଅଖିର ପତା ।
        'ଆଉ କିଆଁ ତେବେ କରୁଚୁ ମଠ ?
ବୋଉ ଭାଇ ତୋର ଗୁହିଁ ରହିଁ ଥିବେ ଯା' ତୁ ଝଟ ।"
ଭାତ ପୁଟୁଳାଟି ବାନ୍ଧିଲା ଅତି ଯତନ କରି
        ମନରେ ଅତୁର ଅବେଗ ଧରି,
ଯାଉଣି କହି ସେ ଚଞ୍ଚଳ ହୋଇ ହେଲା ବାହାର
ଘର ମୁହାଁ ବାଟ···ଭାରି ଉଚାଟ ମନ ତାହାର !

ଉପାସିଆ ଦେହ- ମୁଣ୍ଡ ତ ଝାଇଁ ମାରି ନେଉଚି
ପାଦ ଟଳ ଟଳ ତଥାପି ସଙ୍କୋଚରେ ପଥ ବାହୁଚି ।
ଉପରୁ ମାରୁଚି ନିଦାଘ ଶିଖା,
ଦହେ ଦହେ ତାର ଗଳି ଯାଉଅଛି ଅନଳ ପଖା !
କିଛି ବାଟ ଗଲା···ନାମ-ଜଣା-ନାହିଁ ନଈର କୂଳେ
ବସିଲା, କଷ୍ଟେ ପୁରୁଣା ସେ ବରଗଛର ମୂଳେ ।
ଟୁପ୍ ଟୁପ୍ ଟୁପ୍ ପଡ଼ିଲା କେତୋଟି ନାଲିଆ ଫଳ
ପେଟ ବଳକରେ ଉଠିଲା ଜଳ ।
ଭୋକ ତ ମରନ ଓଲଟି ବଢ଼ିଲା, ହେଲା ନି ସହୁ
ପିଠାଇଲା ତାର ଭାତ ପୁଟୁଳାଟି ଆବେଗ ବହୁ ।
ପୁଣି ସେ କି ଭାବି ପୁରୁବ ପରି
ବାନ୍ଧିଲା ସେଇ ଭାତ ପୁଟୁଳାଟି ଯତନ କରି ।

ଏମିତି ବହୁତ ରାସ୍ତା ରହୁଚି·········ଏତେଇ କୋଶ
କେମିତି ଭଲା ସେ ମାଡ଼ିବ ଭୋକ ରେ ମାରିବ ଶୋଷ ?
ନଈ-ଧାରେ ଯାଇ ଅଞ୍ଜୁଳେ ପିଇଲା ଟିକିଏ ପାଣି
ଯୁବକ ନେଉଟି ଆସିଲା ଉଠତ କଷ୍ଟ ମାନି ।
ଭାତ ପୁଟୁଳାଟି ଜଡ଼ାଇ ବୁକେ,
ଭୂଇଁ-ଶେଯତଳେ ଶୋଇ ପଡ଼ିଲା ସେ ପରମ ସୁଖେ ।

କଅଁଳ ପବନେ ଝୁହୁଁ ଝୁହୁଁ ଅହା ନୟନେ ତାର
କାହୁଁ କାହୁଁ ନିଦ ଭରିଗଲା ସତେ ଅନ୍ଧକାର ।
ବେଳ ଖସିଗଲା—ଖସ୍ତ ମଉଳିଲା—ଅଉ ତ କାହିଁ
ସନାତନ ତହୁଁ ଉଠିଲା ନାହିଁ ।
ବିଞ୍ଚାଞ୍ଚି ଦେଇ ଗୁଉଲଟିମାନ ଖାତଟିମାନ
କାଅ କାଅ ରବ କୁଅ ଉଠାଇଲେ ଶୋକର ତାନ ।

ଯାଉଁ ଯାଉଁ କେହ୍ନୁ କହିଲା ସେଅଟେ ଲକ୍ଷ୍ୟ କରି
"କଏ ସେ ଗୋଟିଏ ଯାଇଚି ମରି ।"
ଅକାଶ ବତାସ କାନେ କାନେ ଭାର ଉଠିଲା କହୁ—
"ମରି ନାହିଁ ସେ ତ ମରଣ-ଜୟୀ ।

---

# ପାଇକ ବିଦ୍ରୋହ

ଜ୍ଞାନୀନ୍ଦ୍ର ବର୍ମା

ସେକାଳେ ନ ଥିଲେ ଏ ଦେଶର ଲୋକ
ଆଜିର ପରିଏ ଏତିକି ହୀନ,
ଫିରିଂ ଶାସନ ଅସହ୍ୟ ହେବାରୁ
ବିଚଳିତ ହେଲେ ଦିନକୁ ଦିନ ।

ସହିଁ ସହିଁ ଶେଷେ ଆଉ ନ ପାରିଲ
ଅଧିକ ଦୂରକୁ ଜୀବନ ସହିଁ,
ଜାଗିଲା ଦ୍ୱନ୍ଦ୍ୱ, ଜାଗିଲ ଅନ୍ଧ
ଚିର ରଣ-ପ୍ରାଣ ଓଗାଳିଲ ବାହି ।

ହାତର ବର୍ଚ୍ଛା କ୍ଷିପ୍ର ହୋଇଲା'
ଚର୍ଯ୍ୟକ ହେଲା ଆଖିର ଗଢ,
କର୍କଶ ହାତେ କାର୍ମୁକ କଷି
ଫାଙ୍କିଲା ପାଇକ ଜଳାଅ ବତୀ ।

ଭିତର ପଡନ୍ତୁ ଲକ୍ଷ ହଜିଲାଣି,
ଜାସ୍ତୁ ଜାଗେଶରେ ବସିଲା ଖୁର,
ଠିକ ଠିକ ହୋଇ ମରବ କଅଁ ରେ
ଅମେ ବିଦାରବା ମରମ-ପୁର ।

ଗଜପତି ରାଜା ଫକୀର ହୋଇଲା,
ହାକିମ୍ପି ବାଠର ଭଣ୍ଡାର ହେଲା,
ଜଗନ୍ନାଥର 'ମଶୋହ୍ମି ମଲାଣି,
ସକଳ ଦଗରୁ ବୁଡ଼ିଲା ଭେଲା । ......

ପାଇକ କହିଲା, ଘାଇକ ଗୃହିଁଲା,
ପାଇକ-ବାଳକା ଧଷିଲା ତୀର,
ଦୂମୁସର କର୍ଣ୍ଣୁଁ ଶୁଭିଲା କାହାଲୀ
ଶିଶୁ ଛାଡ଼ ଗୁହିଁ ଜନନୀ କ୍ଷୀର

ଖୋରଧାର ବଣ, ଖୋରଧାର ଗାଆଁ
ଧୀରେ ଧୀରେ ହେଲା କରଲ୍ଲାଳିତ,
ଗ୍ରାମେ ଗ୍ରାମେ ଉଠେ ଶିଂଗା ଶବଦ
ପ୍ରାଣ କର ଅଛି ଉଚ୍ଛୁସିତ ।

ସମର......ସମର ବିପୁଳ ସମର......
ସମର ଜୁଟିହେଁ ଏ ଗଡ ଜନର,
ଅଶନ, ବସନ, ଜୀବନର ଲାଗି
ଚିର ସମର-ଯାତ୍ରା ମହାଜନର ।

ଦେଶ-କଲ୍ପ ଲାଗି ଜାଗି ନ ପାଇବ,
ଜାଗେ ନ ସଇନ କାହିଁ ଅଶେଷ,
ରକତ-ଶୋଷକ ଫିରଂ ଆସିଛି
ଢଲ ଢଲ କର ଜୀବନ ଗ୍ରାସେ ।

ଗ୍ରାସଇ ଅଜ ରେ ଫିରଂ ଶାସକ,
ଖଣ୍ଡା କାଟଇ ଶଣ୍ଡାସୃତ,
ଦଲବେହେରର ରୁଦ୍ର କୁହାଟେ
ଯଣେ ଉଡଯାଏ ପକ୍ଷୀ-ପଥ ।

ସେଡଂ ରହିଲା ଯାହାଂ ଗରବେ
ନୂଆ ଯଶଗୀତ, ପୁରୁଣା ବୀର,
ଓଡିଶା ଦେଶର ପାଠ ସେନାପତି
ଜଗବନ୍ଧୁର ନିଭନ୍ତି ଗୀର ।

ସାହେବ-ଦିଆନ କୃଷ୍ଣଚନ୍ଦ୍ର
ବକ୍‌ସିର ଆଗେ ହସଇ କବା,
ଓଡିଶା ଦେଶର ସେନାପତି ପୁଣି
ଜନତାର ଦାନେ ଯାପଇ ଦିବା ।

ଜମିଦାରୀ ସବୁ ଜାଗିର ଯାଇଛି,
ରଜା ବି ହୋଇଛି ରାଜ୍ୟହରା,
"ମକଦମା କର ଆଦେଶ ଆସିଛି,
ଦାସ କର ହୋଇ ସର୍ବହରା ।"

ଫିରିଂ...ଫିରିଂ...କେଉଁ ଦେଶର ଏ,
ସେ ଦେଶେ ନାହିଁକ ମହତ-ମାନ,
ବାହୁରେ ସ୍ପୋଟିକ ମାର ହେଲ ବୀର,
ଏ କାଳେ ଶୁଭିଲା କାହାଳୀ-ତାନ ।

ଅସ୍ତାବଳରେ ଅଶ୍ରୁ ଢାକିଲା,
କୁଙ୍କୁମ କିଏ ବୋଳିଲା ସ୍ୱଲେ...
ତନ୍ଦ୍ରା ଭୁଠାଇ ବକ୍ସି ଦେଖଇ
ଅଉ ନାହିଁ ବେଳ ସଇନ ଗୃଳେ ।

ସ୍ୱହାଂ ନୁହଇ ବ୍ରୋହଂ ନୁହଇ...
ଅଜି ଅସିଅଛି ଦେଶର ଡାକ,
ପାଇକ ଏ ନୁହେ ବକ୍ସି ଏ ନୁହେ,
ଅଜି ଜାଗିଅଛି ଦେଶଟା ଯାକ ।

ଦୂରେ ମିଶିଗଲା ଅଶ୍ୱର ହ୍ରେଷା
ପବନେ ଭାସିଲା କଦମ୍ବକ
ବହୁଦିନ.ପରେ ଅସ୍ତ୍ର ଡାକୁଛି
ଜାଗିଛି ଅସ୍ୱତ ଉଚ୍ଛେଦକ ।

ତଟିରେ ଲୁଟିଲା ବକ୍ସିର ତନୁ
ଦ୍ୱାରେ ଦ୍ୱାରେ ବୀର-ଲଲନା ଆଖି
ଓଡ଼ିଶାର ଶେଷ ସେନାପତି ଛବି
କେବଳ ରଖିଲା ନିଖୁଣେ ଆଙ୍କି ।

ଶହେ ବରଷରୁ ଊର୍ଦ୍ଧ୍ୱ ହେଲାଣି,
ବହୁତ ଦିବସ ତଳର କଥା,
ଇତିହାସ ଖୋଲି ଜାଣି ହେବ ସବୁ
ଦେଶ ଲାଗି ଦେଲେ କେତେକ ମଥା ।

ଫିରଂ ଶାସନ ଟଳମଳ ହେଲା
କମ୍ପି କଟକ—ଓଡ଼ିଶା ସାରା
ଜଳିଲା ଖୋରଧା, ବାଣପୁର, ଗୋପ,
ମାତିଲା କୁଜଙ୍ଗ, କନିକା, ପାରା,

ଅସୁରେଶ୍ୱର, ତିରଣ ଜଳିଲା
ହରିହରପୁର ସହିତେ ପୁଣି;
ତଥାପି ନ ଛଳି ରହିଗଲା ସେହି
ବିଦେଶୀ-ଶାସନ-ଯନ୍ତ୍ରପୁରୀ ।

ଷହୀଦ୍ ବକ୍ସି, ଶହୀଦ୍ ସେନାନୀ,
ବନାନୀରେ ନେଲେ ଆପଣା ପଥ,
ବୀର ବାଳା-ବଧୂ ଅନାଇ ରହିଲେ
ନେଉଛିଲା ନାହିଁ ରୁକୁଣା ରଥ !

ଗୋଟି ଗୋଟି ହୋଇ ମସ୍ତକ ଦେଲେ
ସହି ନେଲେ ନାହିଁ ଶାସନ ହୀନ,
ମରି ମରି ସେହି କରି ଗଲେ ଶେଷେ
ଅମ ଇତିହାସେ ମୂଲ୍ୟ ଦାନ ।

ଭାରତ ଯେ କାଳେ ନିଦ୍ରିତ ଥିଲା
ବିଦ୍ରୋହ ନବ ନ ଥିଲା ଜାଣି,
ଆମର ଦେଶର ବୀର-ଅନ୍ତରେ
ଉଠିଥିଲା ତାର ପ୍ରଣବ-ବାଣୀ ।

ଶହୀଦ୍ ପାଇକ, ଶହୀଦ୍ ସେନାନୀ,
ଶହୀଦ୍ ବକ୍ସି ବିଦ୍ୟାଧର,
ମରି ନାହିଁ ତମେ କେବଳ ଗଢ଼ିଛ
ଆମ ଇତିହାସ ଗନ୍ତାଘର ।

---

# ସାଧବ ଝିଅର ଗୋଟିଏ କଥା

ବିନୋଦ ଚନ୍ଦ୍ର ନାୟକ

୧

ଶୁଣ ଲୋ ଝିଅ ମୋ !
କହିବି ମୁଁ ତତେ ଗୋଟିଏ କଥା,
ସାଧବ ଘରର ସାତ ବୋହୂ, ଖାଲି
ଗୋଟିଏ ଝିଅ , ନାଁ କନକଲତା ।

ସାଧବ ବୁଢାର ଗେଲବସର ସେ,
ନାଉଣୀରେ ତାର ଶରଧା ଭାରି ।
ବଣିଜରେ ଗଲେ ସାଧବ, ନିଏ ତା'
ସାଥିରେ ତାହାକୁ ଦରିଆ ପାରି ।

ଶୁଣ ଲୋ ଝିଅ ମୋ ! ଶୋଇ ପଡୁଛୁ କି !
ଶୋଇଲେ କହିବି ନାହିଁ ମୁଁ କଥା,
ବୋଇତରେ ବସି ଦରିଅର ପାରି
ଦିନେ ଗଲା ଚାଲି କନକଲତା ।

୨

ଯାପାନୀ ସାଗର ଉପକୂଳୁଁ ଦୂରେ
ଦୋହାଇ ବୋଇତ ସ୍ୱେଦନ ଛପେ,
ଦୂର ଦ୍ୱୀପ କ୍ଷେତ୍ରୁ ଲବଙ୍ଗ ଫୁଲ—
ଗନ୍ଧ ପବନ ଅଣାଇ ପାଶେ ।

ନୀଳ ଲହରୀର ଫେନପୁଞ୍ଜରେ
ବୁଡ଼ିଗଲା ଧୀରେ ରବିର ତରୀ,
ସନ୍ଧ୍ୟା ଅସିଲା ନୀଳମେଘୀ ପାଟେ
ଘୋଡାଇ ଅକାଶ ଯତନ କରି ।

ସପ୍ତମୀ ତିଥି ଚନ୍ଦ୍ର ଉଇଁଲା
ମେଘର ଉଠାଲେ ଲୁଗୁଭ ମଥା,
ଅଜା କହୁଥିଲା ସାକ୍ଷୀଗୋପାଳ—
ଗପ; ଶୁଣୁଥିଲା କନକଲତା ।

୩

ବୋଇତର ବୁଢ଼ା ଖଲାସି ଅସିଣ
ସଲାମ ଜଣାଏ ସାଧବ ଅଗେ—
"ହୋସ୍ମାଂହୋ ନଦୀ ମୁହାଣ ଅଗର
ବନ୍ଦରେ ଅସି ବୋଇତ ଲାଗେ,

ଚନ୍ଦ୍ରରେ ଦିଶେ ଅଲୋକ-ପରିଧି,
ଝଡ ଅସିପାରେ ରାତି ବେଳେ,
ନଙ୍ଗର ଦେବା ନଦୀର ମୁହାଣେ
ସକାଳର ଯାଏ ହୁକୁମ ହେଲେ ।"

ବୁଢା ମାଟି ପିଏ, ବଙ୍କଘାଟରେ
ଭେଟେ ଝଡ ଭାର ଛୁଇଁଣ୍ଟି ମଥା,
ସାକ୍ଷୀଗୋପାଳ ଅଶ୍ରୁଣା ରହିଲା,
ଚକିତେ ଗୁହିଁଲା କନକଲତା ।

୪

ପିକା ଝାଣି, ପାଟି କଣେ କୁଣ୍ଡଳୀ—
ଧୂଆଁ ଛାଡ଼ି, ହସେ ସାଧବ ଧୀରେ,
"ଅକ୍କଲ ନାହିଁ ବୁଢା ଖଲାସର
ବୁଢା ବେଳେ ଡର ଛାଡ଼ି ନା କ ରେ !"

ଗ୍ଭଲଇ ବୋଇତ, ଧଗରେଖା ଭେଦ
ନୀଳ ଜଳରାଶି କରୁଡ଼ି ହୁଏ,
ସାଗର ସ୍ନାନ କ ସପ୍ତର୍ଷିଡାବ
କର ନିଏ ! ନଦେ ଲହରୀ ଛୁଏଁ ।

ଚନ୍ଦ୍ର ନଭିଲ୍ଲ ସ୍ତୂପ ମେଘମେଳେ ......
ଅଲଅର ଅଙ୍କ ନ ମିଲେ ପତା,
ସାଧବର କୋଳେ ଅଜ୍ଞା ବସିଲା
ଘୁଞ୍ଚି ଅଳପ କନକଲତା ।

୫

ପ୍ରଳୟ ଶଙ୍ଖ ବାଜିଲା ଅକାଶେ
ମେଘେ ଚମକଇ ବିଜୁଳି ରେଖା,
ଊର୍ମି ଉପରେ ଊର୍ମି ଉଠଇ
ତଟଭୂମି ନାହିଁ ଯାଏ ତ ଦେଖା ।

ସନ୍ତ୍ରସ୍ତ ଫଣା ଟେକି ଫୁତ୍କାରେ
କାଳ-ନାଗୁଣୀ କି ଆସଇ ଧାଇଁ
ରୁଦ୍ର ଅନୁ ଘେରି ସାଧବ ବୁଡାର
ବଣିକ ତରୀକି ଗ୍ରାସିବା ପାଇଁ !

ବୃଷ୍ଟି ଆସିଲା ଘୋଟେ ଅନ୍ଧାର
ସୃଷ୍ଟି ଶେଷର ଛବି ଯଥା
ସାଧବର କୋଳେ ଅଙ୍କେ ବସିଣ
ଅନାଇ ରହନ୍ତି କନକଲତା !

୬

ଗର୍ଜେ ସାଗର ଭୀଷଣ ବେଶରେ
ଉଡ଼ାଇ ବୁଡ଼ାଇ ବୋଇତ ଦୁଏ,
ପାହାଡର ସମ ଲହଡ଼ା ଲହଁସି
ଉଠେ ଅକାଶ-ମେଘକୁ ଛୁଇଁ ।

କେଉଁଆଳ ଛାଡ଼ି ପାଲ ଖୋଲି ଦେଇ
ନଙ୍ଗର ମାଟି ପକାଏ ପାଖେ
"ଜୟ ଚକାଡୋଳା ପତିତ ପାବନ"
ଶିରେ ହାତ ଯୋଡ଼ି ସାଧବ ଡାକେ ।

ଯେତେ ହାତ ଟେକି "ଜୟ ଚକାଡୋଳା"
କହି ନୁଆଁଇଲା ତଳକୁ ମଥା
ବିଦେଶୀ ସାଗରେ ତୋଫାନର ତୁଲେ
ସେଦିନ ପ୍ରଥମେ କନକଲତା ।

୭

କନକ ପଚାରେ "ଗୁଡୁମ ଗୁଡୁମ
ଶୁଭେ କସ ଅଜା ଦୂରେ ସିଅଡେ ?"
"ଅମପର କେଉଁ ବୋଇତ ବପଦେ
ସାମ୍ରାଜ୍ୟ ଲୋଭି କମାଣ ଛୁଟେ ।

"ନଙ୍ଗର ନାହିଁ ମାଜଇ ବୋଇତ
କାହିଁ ବୁଢ଼ା ମାଝି ଖଲାସି କାହିଁ ?"
ସାଧବ କହିଲ, "କନକ ! ଏଇଠି
ବସିଥା, କୁଅଡ଼େ ଯିବୁ ତୁ ନାହିଁ ।

"ବୋଇତ ମଙ୍ଗ ସଲଖାଇ ଦେଇ
ଫେର ଆସୁଛି ମୁଁ ।" ହଲାଇ ମଥା
ହଅଁ ଭର ଏକା ସୁନା ଝିଅ ପର
ନ ଡର ବସିଲ କନକଲତା ।

୮

ସହସା ବୋଇତ ପିଠି ହୋଇଗଲ
ସାଗରର ଲମ୍ବ ପାହାଡ଼ ପରେ,
ଭାଜିଲ ମଙ୍ଗ ... ଗଦ ଗଦ ହୋଇ
ଚାରିଅଡୁ ପାଣି ବୋଇତେ ପଡେ ।

"ବୋଇତ ବୁଡୁଛି... ଚଞ୍ଚଳ ଆସ ।"
ଖଲାସି କେ କହେ ଆସେଣ ଧାଇଁ,
"ନଉକା ଛାଡୁଛି ।" କନକ କହିଲା,
"ଆଜ ଛାଡ଼ିବାକୁ ହୁକୁମ ନାହିଁ ।"

ପଳାଏ ଖଲାସି ଜୀବନ ବିକଳେ
ବେଳ ନାହିଁ ଆଉ ଶୁଣିବ କଥା,
ଅଙ୍କାର ଫେରିବା ପାଇଁ ଥିର ମନେ
ବସି ରହେ ଏକା କନକଲତା ।

୯

ଉଠେ ଗରଜି ଅଛିଣ ଲହଡ଼ା
କନକଲତାର ପଦରେ ଛୁଏଁ
ବୁଡ଼ୁଛି ବୋଇତ ତଥାପି କନକ
ଟିକିଏ ହେଲେ ବି ଅଧୀର ନୁହେଁ ।

ଆସିବ ତ ଅଙ୍କା କାହିଁ ଅଙ୍କା ଆଉ—
ମଙ୍ଗ ସାଥିରେ ଗଲାଣି ଭାସି !
ଗର୍ଜେ ସାଗର ଭୈରବ ରୋଷେ,...
କିଏ ଦେବ ଏଇ ଖବର ଆସି !

ବଜ୍ର ବାଜିଲା ହଠାତ୍ ଆକାଶେ
ଉଠିଲା ଊର୍ମି ପ୍ରଳୟ ଯଥା;
ବୁଡ଼ିଲା ବୋଇତ ଅତଳ ଜଳରେ
ବୁଡ଼ିଗଲା ଅହା କନକଲତା !

୧୦

ଯାପାନୀ ସାଗର ଉତ୍ତର ଦିଗେ
ତୁଷାରିତ ମେରୁ ସାଗର କୂଳେ
ମତ୍ସ୍ୟ-ଶିକାରୀ ନାଉରୀ ଦେଖିଲା
ଅପସରୀ କିଏ ଶୋଇଛି ଭୁଲେ ।

ନିକଟେ ଦେଖିଲା ଗ୍ଲେନ୍‌ ଝିଅଟିଏ
ମଲା ପର ନାହିଁ ଯାଏ ତ ଜଣା,
ଅଖିକୋଣେ ଜମି ତୁଷାର ହୋଇଛି
ଦୁଇଟି ଲଳିତ-ଲୋତକ କଣା ।
ତୁଷାରରେ ସାଜ ଦେଲା ତା ସମାଧି
ଚୀନା ନାଉଟା ସେ । ସଇଲା କଥା
ଶୁଣିଲୁ ତ ଝିଅ, କଥା ରହିଗଲା
ଗୁଲଗଲା ସିନା କନକଲତା ।

---

# ବାଜି ରାଉତର ମାଆ

ଅନନ୍ତ ପଟ୍ଟନାୟକ

ମଉଳିଲା ସଭା, ଫେରିଲେଣି ସବୁ ଲୋକେ;
କାହିଁ ଅବା କଏ ଗଳ୍ପ ରଚିଲେ ଥୋକେ ।
ପଉଷ ହିମାଳ ଢଳିଙ୍ଗା ଥରାଇ ବକ୍ଷେ,
ଢେଙ୍କାନାଳର ହୃଦ କି ଅଗ୍ନି ଦହେ ! !

ସବି ପାଛିଲେ ବାଜବ ସମର ଭେରୀ,
ସୈନିକ ଗୃହେଁ ପଶ୍ଚାତେ ଟିକେ ଫେରି ।

ଛିନ୍ନ ଦସନ ମଳିନ ଆନନ ତୋଳି
ଅସୀମ କାଳର ଅକୂଳ ଅକୁଣ୍ଠ ଗୋଳା
ଅତି ସକରୁଣ ସ୍ୱରେ—
ଜନନୀ କହିଲା ଥରାଇ ନୟନ ଜଳେ ।

"ତମେ ତ ସ୍ୱର୍ଗର ବାକ୍ୟ ଚଲା ଯେ ବାଟେ,
ଭିଡ଼ିବ ତରୀଟି ଭିଡ଼ିଲା ସେ ଯେଉଁ ଘାଟେ ।
ଶୁଣିବ ନା କଥା ପାଗଳ ହୋଇଚ ପରା,
କାହିଁକି ମରୁଚ କାହିଁକି ସେ ଅବା ମଲା ?

କୋଳ ପୁଅ ମୋର କୋଳରେ ଥା'ନ୍ତା ଶୋଇ
ତମ ଲଗି ସିନା ବଳିଲି ତାହାକୁ ଖୋଇ ।
ସବୁଗାଁ ଯାକର ପରଜା ହୋଇବେ ସୁଖୀ,
ସେଥିଲଗି ସିନା ହେଲି ମୁଁ ଲୋତକ-ମୁଖୀ ।

ସେଥିଲାଗି ସିନା ପଡ଼ିଲା ଠୋକାଠା ତଳି,
ଅକାଳେ ଲୋଟିଲା ଦରଫୁଟା ଫୁଲ-କଳି ।
—ଦୁଖ ନାଇଁ ମୋର ଦୁଖ ଖାଲି ଲାଗେ ମନେ,
ସତେ କି କେବେ ରେ ସୁଖୀ ହେବେ ଦେଶଜନେ ?

ଚମକିଲା ଅଖି    ରକ୍ତ ଉଠିଲା ଥର,
ବାଷ୍ପ-ଆକୁଳ କଣ୍ଠ ଧଇଲା ଘଡ଼;
    ପାରିଲନି କିଛି କହି,
ବୁଝିଲି କିଏ ସେ କଥା କହିହ ପାଶେ ଲଇଁ ।

"ପରଜା ସବାଶେଷ ଗଲା ସିଏ ଯାଇ ଦୂରେ
ଛାଡ଼ୁ ପଛେ ନାଅ ମରଣ-ସାଗର-କୂଳେ ।
ପରାଣ ଯାଉ ନା ହେଉ ଆତୁରତା ନେଇ
ତେସନେ ଅଛି ତ ଟେକିଟା ଯାଏ ଦେଇ ।

ସତେ କି ମେଣ୍ଟିବ ଦୁଃଖ ?
ସତେ କି ଫୁଟିବ ଉଅଁସ କଠାର
ସୁନେଲି ସୂର୍ଯ୍ୟ-ମୁଖ ! ”

ସାନ୍ତ୍ୱନା ଦେବ ସାନ୍ତ୍ୱନା ଦେବ କା’ରେ ?
ଯେ ଅଳ୍ପ ଓଲଟି ମୃତ୍ୟୁର ଦୀପ ଜାଳେ ।
ଯେ ମାଆ ରଖିଲା ବୁକୁର ରୁଧିର ଢାଳି
ଶିଶୁ ସେନାପତି ଶିରେ ଜୟ-ଟିକା ମାରି
ସାନ୍ତ୍ୱନା ଦେବ ତା’ରେ ?
ଅନ୍ତର ଆସ ଭରିଲି ନିମିଷେ
ମୃତ୍ୟୁର ଉପଗୃରେ ।

ନୂଆଇଁ ଅଳୁଲେ ମଥା
ନୀରବ ରହିଲେ ସୈନିକ ସବୁ
ମୁଖରିଲା ନୀରବତା ।

ସେନାପତି-ପଦେ ବରଣ କଲେ ନା କେହି
ପୁଷ୍ପ-ମାଳିକା ଗଳଦେଶେ ତାର ଦେଇ ।
ଶଙ୍ଖ ଶବଦ ନ ଶୁଭିଲା ତାର ପଥେ
ଜୟଧ୍ୱନି ସେଲ ନ ଉଠିଲା ଅମ୍ବରତେ;
ବାଳୁତ ବୀର ସେ ହସି
ଝଡର ଅବେଗେ ଶ୍ମଶାନକଳେ ଗଲା ପଶି !

ଭଗ୍ନ ପାଇକ ପରିବେଶ ଅଣିଲା ବଳ,
ଡାକିଲା ଉଚେ “ଢୋଲ ରେ ନିଶାଣ ଢୋଲ ।

ମରିବାକୁ କିବା ଭୟ ?
ମର ପଗ୍ ତଳେ ଶତ୍ରୁବାହିନୀ
ଲଢ଼ିବାକୁ ହେବ ଜୟ ।”
ସେହୁ ଡାକ ଅସି ବାଜିଲା ଶ୍ରବଣ ଦେଶେ
ସଜଳ ନୟନେ ଭାଷିଲା ଜନନୀ ଶେଷେ;
“ଯାଅ ରେ ପାଇକ ଯାଅ,
ସେନାପତି ତୁମ ସମ୍ମୁଖେ ଏଇ—
କୀରତି ତାର ଗାଅ ।”

ସେନାପତି କାହିଁ ଦୂର ଭାଟେଯୋଢ଼ୀ କୂଳେ
ଶୋଇଛି ପୁଲକେ ବାଲୁକା ଧୂଳିର ତୁଳେ ।
ବହୁ ଦୂରେ ଅମ ନୟନେ ଝଲିଲ ଛବି
ତିମିର କାଟାଇ ଜଳିଲା ଜୀବନ-ରବି ।
ନାଚିଲ ଶୋଣିତ-ଧାରା,
ମର ଅଙ୍ଗେ ଅଜ ଶମାଇଦେବୁ ରେ
ମଲ୍ଲୀରୁ ମରଣ-ଜାଳା ।

# ପୀର୍ ଆଲୀ

କୃଷ୍ଣକାନ୍ତ ଦାଶ

ବିଦ୍ରୋହୀ ସିପାହୀ-ନେତା ପୀର୍‌ଅଲ୍ଲୀ ଫିରିଙ୍ଗିର ହାତେ
ବନ୍ଦୀ ହୋଇ ରହିଥିଲେ ପାଣି କେଉଁ ଦୁର୍ଦ୍ଦିନ ପ୍ରଭାତେ ।
କହିଲେ ଶ୍ୱେତାଙ୍ଗ-ନେତା ଗର୍ବ ସ୍ୱରେ ବିଦ୍ରୂପ ମିଶାଇ
"ଦୁର୍ଲ୍ଲଭ ମାନବ ଜନ୍ମ ଜୀବନରୁ ବଡ଼ କିଛି ନାହିଁ ।
ଆଗେ ଦେଖ ଫାଶି-କାଠ, ରକ୍ତ ନେତ୍ରେ ଚାହିଁଛି ମରଣ,
ଫିରିଙ୍ଗି ଇସ୍ପାତ ମୁଷ୍ଟି ତଳେ ଦେଖ ତୁମର ଜୀବନ ।
ଏବେ ବି ସମୟ ଅଛି—
ନାମ ବୋଲ ଅନ୍ୟ ବିଦ୍ରୋହୀର
ଭୋଗିବ ସମ୍ପଦ ସୁଖ ସୁଖେ ରଖି ଗର୍ବୋନ୍ନତ ଶିର ।"

ଲୌହ-କଡ଼ି ତୀବ୍ର ଫୁଟେ ଝର ଝରଇ ଶୋଣିତ
ନିର୍ଭୀକ ବଦନୁ ଝରେ ଜନ୍ମଭୂମି-ମୁକତି-ସଙ୍ଗୀତ ।

ଉତ୍ତରିଲେ ପୀର୍ ଅଲ୍ଲୀ, "ରେ ଫିରଙ୍ଗି, ହୋଇ ଯେ ସ୍ୱାଧୀନ
ବୁଝେ ନାହିଁ ଦାସତ୍ୱର ଦୁଃଖ ନିଜେ ସେହି ପରାଧୀନ ।
ଖଡ୍ଗ ବଳେ ଜିଣି ବହୁ ରାଜ୍ୟ ଗ୍ରାମ ମୃତ୍ତିକା ଭଣ୍ଡାର
ଧରିଛୁ କି ରେ ଫିରଙ୍ଗି ପୀର୍ ଅଲ୍ଲୀ ହୃଦ ଅଧିକାର ?
ଝୁଲାଇବୁ, ଝୁଲ ମୋତେ ଫାଶି କାଠେ ନାହିଁ ଡରେ ଭୟ ।
ପାରିବୁ କି ଝୁଲାଇ ତୁ ଜନ୍ମଭୂମି ଆଦର୍ଶ ନିଚୟ ?
ଆଜି ମୃତ୍ୟୁ ମୃତ୍ୟୁ ନୁହେଁ ଜୀବନର ଅନନ୍ତ ଉତ୍ସବ
ମରି ଚିର ବଞ୍ଚିବାର ଏ ସୁଯୋଗ ଜଗତେ ଦୁର୍ଲ୍ଲଭ ।
ମୋର ରକ୍ତ ବିନ୍ଦୁ ବିନ୍ଦୁ ଝରିବ ଯେ ଜନ୍ମଭୂମି ପାଦେ
ଜନ୍ମିବେ ମୁକ୍ତିର ରକ୍ତବୀଜଦଳ ତହୁଁ ମହାହ୍ଲାଦେ ।
ବନ୍ଧୁକ ତୋ କର କ୍ଲୀବ ବିଦ୍ରୂପ ତୋ ଦେବେ ରେ ନିଷ୍ଠୁର
ଦୁର୍ଜ୍ଜୟ ମୋ ଆତ୍ମା ସ୍ୱର୍ଗେ ସୁଖୀ ହେବ ଜାତି-ମୁକ୍ତ ଗୃହିଁ ।"

---

# ବୀରମାତା

ଷିତୀଶ ଚନ୍ଦ୍ର ଦେ

ନେତାଜି ସମୀପେ ଖବର ଆସିଲା
କାନ୍ଦଇ ନାରୀ ଜଣେ
ଗୋଟିଏ ମାତ୍ର ପୁତ୍ର ତାହାର
ମରିଛି ସେଦିନ ରଣେ ।

ଶୁଣି ଏ ବାରତା, ଦେଖିଲେ ନେତାଜି
ଶିବିରୁଁ ବାହାରେ ଆସି
ଦୁଃଖିନୀ ଏକ ରମଣୀ-ନୟନୁ
ଅଶ୍ରୁ ଯାଉଛି ଭାସି ।

କୋମଳ କଣ୍ଠେ ସାନ୍ତ୍ୱନା ସ୍ୱରେ
ନେତାଜି କହିଲେ, "ମାତ,
ବୀର ପରି ଯେହୁ ମରିଛି, ତା ପାଇଁ
ନ କର ଅଶ୍ରୁପାତ ।

ଭାଗ୍ୟବାନ ସେ, ଦେଇଛି ଜୀବନ
ଦେଶର ମୁକ୍ତି ଲାଗି,
ନ କର ଜନନୀ, ଶୋକ ତାହା ପାଇଁ
ସେ ଯେ ଦେବାଶିଷ-ଭାଗୀ ।

ମୃତ୍ୟୁ-କବଳୁଁ କାହାରି ତ ଭବେ
ନିସ୍ତାର କେବେ ନାହିଁ,
ସେହୁ ଏକା ଜଣେ ବରେ ଯେ ମୃତ୍ୟୁ
ଦେଶ-କଲ୍ୟାଣ ପାଇଁ ।

ତା ଛଡା ଜନନୀ, ମୁଁ ପରା ରହିଛି
ତୁମ ପୁଅ ଏକ ଅଉ,
ଛାଣି ନିଅ ମତେ, ଶୂନ୍ୟ ତୁମର
କୋଳ ପୂର୍ଣ୍ଣ ଭରିଯାଉ ।"

କହିଲ ରମଣୀ ଅଞ୍ଚଳେ ପୋଛି
ଲୋତକ ନୟନୁ ବେଗ
"ଜାଣିଛୁ କି ପୁଅ, କାନ୍ଦୁଥିଲି ମୁଁ
କି ବେଦନା ପ୍ରାଣେ ଘେନ ?

ପୁତ୍ର-ମରଣେ . ଦୁଃଖ ନ ଥିଲା
ମରିଛି ସେ ଦେଶ ପାଇଁ,
ଦୁଃଖ ଏତକି, ଦେଶ ସେବା ଲାଗି
ଦ୍ୱିତୀୟ ପୁତ୍ର ନାହିଁ ।

କୋହମା ପ୍ରାନ୍ତେ ଯୁଦ୍ଧ ଲାଗିଛି
ବାହୁନୀ ଗୁଳିଛି ସେଠି,
ଅଉ କେହୁ ନାହିଁ, କାହାକୁ ଦେବ ମୁଁ
ଫଉଜେ ତୋହର ଭେଟି ?”

ବସ୍ମୟ-ମୂକ ରହିଲେ ନେତାଜି,
କହିଲେ ଏତକ ଧୀରେ,
“ଧନ୍ୟ ଜନନୀ, ବୀର-ପ୍ରସବିନୀ
ପଦ ଧୂଳି ଦିଅ ଶିରେ ।”

# ଟିପ୍ପଣୀ

## ହରିଜନ

United Press ର Tragic death of sweeper woman, Patna, June 12 ର ଏକ କ୍ଷୁଦ୍ର ସମ୍ବାଦ ଉପରେ 'ହରିଜନ' ଲିଖିତ ।

## ନାପିତାଣୀର ଗାନ୍ଧୀପୂଜା

ଇଂରେଜୀ ହରିଜନ ପତ୍ରିକାରୁ କଥା ସଂଗୃହୀତ ।

## ମରି ନାହିଁ ସେ ତ ମରଣ-ଜୟୀ

ଶ୍ରୀଯୁକ୍ତ ଦ୍ୱିଜେନ୍ଦ୍ର ଲାଲ ନିୟୋଗୀ ଙ୍କର True tales of Indian Life ନାମକ ପୁସ୍ତକରେ ପ୍ରକାଶିତ 'ସନାତନ' ର କରୁଣ କଥା ଏ କବିତାର ମେରୁଦଣ୍ଡ ।

## ସାଧବ ଝିଅର ଗୋଟିଏ କଥା

ଲେଖକ 'ସାଧବ ଝିଅର ଗୋଟିଏ କଥା "ପୂର୍ବ"କୁ ଶୁଣାଇଛନ୍ତି ।

# ବାଜି ରାଉତର ମାଆ

ଏହି କବିତାଟି ବାଜି ରାଉତ ଶିରୋନାମାରେ ସହକାରରେ ପ୍ରକାଶିତ ହୋଇଥିଲା ।

ଢେଙ୍କାନାଳର ପ୍ରଜା ଅନ୍ଦୋଳନ ରେ ବହୁଲୋକ ଗୁଳିରେ ହତାହତ ହୋଇଥାନ୍ତି । ୧୯୩୮ ର ଡିସେମ୍ବର ୨ ତାରିଖରେ ମୋଗଲବନ୍ଦୀରୁ ପ୍ରଥମ ସତ୍ୟାଗ୍ରହ ସେନା ଗୁଲିଲେ । ଲେଖକ ସେହି ଦଳର ସୈନିକ । ଲେଖକ ଶହୀଦ ବାଜି ରାଉତର ମାତାଙ୍କ ସଙ୍ଗେ କଥାବାର୍ତ୍ତା କରିଥିଲେ । ବୀରଜନନୀର ବାଣୀ ଏ କବିତାର ଜନନୀ ।

କାଠଯୋଡ଼ୀ କୂଳରେ ଅନ୍ୟାନ୍ୟ ଶହୀଦଙ୍କ ସଙ୍ଗରେ ବାଜି ରାଉତର ଶବ ସତ୍କାର ହୋଇଥିଲା ।

# ପୀର୍ ଆଲୀ

୧୮୫୭ ର ସିପାହୀ ବିଦ୍ରୋହରେ ପୀର୍ଅଲ୍ଲୀ ଥିଲେ ଜଣେ ନେତା । ବହୁ ଇଂରେଜଙ୍କ ବଧ କରି ସରକାରଙ୍କ ଦ୍ୱାରା ଧରା ହେଲେ, ତାଙ୍କର ଫାଶୀ ହୁକୁମ ହେଲା । ଫାସି ଦେବା ସମୟରେ ରାଜ କର୍ମଚାରୀ ଅନ୍ୟ ବିଦ୍ରୋହୀଙ୍କ ନାମ କହି ଦେଲେ ତାଙ୍କୁ ମୁକ୍ତ କରି ଦେବେ ବୋଲି ପ୍ରଲୋଭନ ଦେଖାଇଲେ । ପୀର୍ ଅଲ୍ଲୀ ପ୍ରାଣ ଦେଲେ ମାତ୍ର ଜନ୍ମଭୂମି ପ୍ରତି ବିଶ୍ୱାସଘାତକତା କଲେ ନାହିଁ ।

---